ହୃଦୟେ ପ୍ରବାସ

ପ୍ରଫୁଲ୍ଲତା ମହାପାତ୍ର

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚାମ୍ବର୍ସ
ଭୌମନଗର
ଭୁବନେଶ୍ୱର-୧

ପ୍ରଥମ ପ୍ରକାଶ-୨୦୦୧

ପ୍ରଚ୍ଛଦ
ବଳଦେବ ମହାରଥୀ

ଲେଜର ଟାଇପ୍
ରୟାଲ୍ ଗ୍ରାଫିକ୍ସ
ଏ/୫, ସତ୍ୟନଗର, ଭୁବନେଶ୍ୱର-୭

ମୁଦ୍ରଣ
ଶୋଭନ୍
ଆଚାର୍ଯ୍ୟ ବିହାର
ଭୁବନେଶ୍ୱର

୪୫ ଟଙ୍କା ମାତ୍ର

**HRUDAYE PRABASA**

**Prafullata Mohapatra**

*Publisher*
**Lark Books**
Subarnarekha Chambers
Bhauma Nagar
Bhubaneswar-1

*1st Edition*-2001

Cover
**Baladev Maharatha**

*Laser Type*
**Royal Graphics**
A/5, Satya Nagar
Bhubaneswar - 7

*Printed at*
**Shovan**
Acharya Vihar, Bhubaneswar

Rs. 45/- Only

**ISBN - 81-7375-093-9**

ନିର୍ଜନ ଜହ୍ନରାତି
ଓ
ନିଃଶବ୍ଦ ଅରଣ୍ୟକୁ—

ଶ୍ରୀମତୀ ପୁଷ୍ପଲତା ମହାପାତ୍ର
ତ୍ରୈଲିପଦା, ଜଗତସିଂହପୁର

ଆ । କାଶରୁ ଅଜାଡ଼ି ପଡୁଛି ଜ୍ୟୋସ୍ନା । ଚାରିଆଡ଼ ଚିକ୍ ଚିକ୍ କରୁଛି ।

ଦୋ' ତାଲା ଛାତରେ ବସିଥିଲା ବାଣୀ ।

ମୁଗ୍ଧ ଦୃଷ୍ଟିରେ ଚାହିଁଥିଲା । ହଜି ଯାଇଥିଲା ।

ଘରର ଡାହାଣ ପାଖକୁ ମହାନଦୀର ଧାରଟିଏ । ବୁଢ଼ ନଈ ନାଆଁରେ ବହି ଯାଉଛି । ନଈର ଦୁଇ କୂଳରେ ଘଞ୍ଚ ବାଉଁଶ ବୁଦା ଓ ଆମ୍ବ, ଚାକୁଣ୍ଡା, ଡିମିରି, ତେନ୍ତୁଳି ଗଛ । ସେହି ସବୁ ଗଛର ଫାଙ୍କ ଦେଇ ଠାଏ ଠାଏ ନଈଟା ଚିକ୍ ଚିକ୍ କରି ଝଟକି ଉଠୁଛି । ବାରି ପାଖରୁ ନଈକୁ ଯିବାକୁ ସରୁ ପାଦଚଲା ରାସ୍ତାଟିଏ ପଡିଛି । ଗାଧୁଆତୁଠ ହୋଇଛି ।

ବର୍ଷସାରା ଦୂର ବିଦେଶରେ ରହି ରଜ ଛୁଟିରେ ପ୍ରତିବର୍ଷ ସେମାନେ ଗାଁକୁ ଆସନ୍ତି । ପ୍ରାୟ ମାସେ ଦେଢ଼ମାସ ରହନ୍ତି । ରଜ ସଂକ୍ରାନ୍ତି ପରେ ସହରକୁ ପୁଣି ଫେରିଯାଆନ୍ତି । ସ୍ୱାମୀଙ୍କର ଅଫିସ । ପିଲାଙ୍କର ସ୍କୁଲ । ପୁଣି ସେଇ ଗତାନୁଗତିକ ଜୀବନ-ଚକ୍ର !

ତେଣୁ ବାଣୀକି ଏଇ କେତୋଟି ଦିନ ଭାରି ମହାର୍ଘ ମନେହୁଏ । ପ୍ରତିଟି ମୁହୂର୍ତ୍ତ ତାକୁ ନୂଆ ନୂଆ ଲାଗେ । ବିଶେଷକରି ବର୍ଷର ଏଇ ଦିନଗୁଡ଼ିକ ତାକୁ ଖୁବ୍ ଭଲ ଲାଗେ ।

ଗ୍ରୀଷ୍ମ ଯିବ ଯିବ ହେଉଥିବ । ଦି' ପାଦ ଯାଇ ପଛକୁ ଫେରି ଚାହୁଁଥିବ । ବର୍ଷା ଆସିବ ଆସିବ ହେଉଥିବ । ପୁରୁଣା ସ୍ଥାନରୁ ନୂଆ ସ୍ଥାନକୁ ବଦଳି ହୋଇଗଲେ ସେହି ନୂଆ ସ୍ଥାନକୁ ଆଗରୁ ଯାଇ ଥରେ ଦେଖି ଆସିଲା ପରି, ବର୍ଷା ମଧ ମେଘଡମ୍ବରୁ ଶାଢ଼ି ପିନ୍ଧି, ପାଦରେ ନୂପୁର ବାନ୍ଧି, ଥରେ ଦି'ଥର ବୁଲି ପଡ଼ି, ଦେଖାଦେଖି କରି ଯାଉଥିବ ।

ଗ୍ରୀଷ୍ମ ଓ ବର୍ଷାର ଏଇ ମିଳନ ସମୟଟା ଖୁବ୍ ଚମତ୍କାର ଲାଗେ ବାଣୀକୁ ।

ଗାଁ ଗଣ୍ଡା ପୁରପଲ୍ଲୀରେ ହିଁ ଅତି ପରିଷ୍କାର ଭାବରେ ଏଇ ଛବି ଫୁଟି ଉଠେ । ଶୁଖିଲା ଗଛ ସତେଜ ଦିଶେ । ପତ୍ରଗୁଡ଼ିକ ଗାଢ଼ ଶାଗୁଆ ହୋଇ ଉଠେ । ବେଳେବେଳେ ଆଷାଢ଼ ମାସରେ ରଜସଂକ୍ରାନ୍ତି ପଡ଼େ । ବାଣୀ ଦେଖେ ଆକାଶରେ ସ୍ତୁପ ସ୍ତୁପ କଳାମେଘ ଜମି ଉଠି କେମିତି ପାହାଡ଼ ପର୍ବତ, ହାତୀ, ଘୋଡା, ଜୀବ-ଜନ୍ତୁ, ଅସୁର ପରି ଆକୃତି ନିଏ ।

ବୁଢ଼ି ନଈର ଶୁଖିଲା ଛାତି ଧୀରେ ଧୀରେ ଭରି ଉଠେ । ଛଇଳା କିଶୋରୀ ପରି ତରଙ୍ଗାୟିତ ହୋଇ ସେ ବହିଯାଏ । ଆଷାଢ଼ର ପହିଲି ବର୍ଷା ପରେ ପରେ ନଈରେ ନୂଆ ପାଣି ଆସି ଉଚ୍ଛୁଳି ଉଠେ । ସେଇ କଅଁଳିଆ ନୂଆ ପାଣିରେ ଛୋଟ ବନ୍ୟା ଆସେ । ସେଥିରେ ଭାସି ଆସେ ମାଛମଞ୍ଜି, ମାଛ ଜାଆଁଳ । ଛୋଟ ଛୋଟ ବେଙ୍ଗଫୁଲାରେ ଭରିଯାଏ ପୋଖରୀ ଗାଡିଆ । ଆଷାଢ଼ ରାତିର ଲକ୍ଷକୋଟି କୀଟପତଙ୍ଗ ଜନ୍ତୁ ଜନ୍ତାଙ୍କର ସେହି ଯେଉଁ ଐକତାନ, ତାକୁ କାନଡେରି ଶୁଣେ ସେ । ସେହି ଧ୍ୱନିର ବୈଚିତ୍ର୍ୟ ନିଜ କାନରେ ନଶୁଣିଲେ କ'ଣ ବୁଝିହୁଏ ? ଜଳ ପ୍ରପାତର ଶବ୍ଦ ଯେମିତି ଅବିରାମ, ଗୋଟିଏ ସୁରରେ ବନ୍ଧା, ସେହି ଧ୍ୱନି ବି ସେମିତି । ସେ ମୋହମୁଗ୍ଧ ହୋଇପଡ଼େ ।

ପ୍ରତିଦିନ ସନ୍ଧ୍ୟାରେ ଗାଧୋଇ ସାରି ଛାତ ଉପରକୁ ଉଠିଆସେ ବାଣୀ ।

ତା' ତଳ ଯା' ପିତୁ ପିଣ୍ଡାରେ ପରିବା କାଟୁଥାଏ । ମଝିଆଁ ଯା' ନିମା ମାଛ କାଟୁଥାଏ କି ଅନ୍ୟ କିଛି ଗୋଟାଏ କାମ କରୁଥାଏ । ସାନ ଯା' ସୁମି ଚୁଲି ଲଗାଉଥାଏ କିମ୍ବା ଚୁଲି ଉପରେ ଭାତ ହାଣ୍ଡି ବସେଇ ପାଣି ଢ଼ାଳୁଥାଏ । ତଳ ଖଞ୍ଜାରେ ଦକ୍ଷିଣ ପାଖ କଣ ମୁଣ୍ଡ ଘରଟି ବାଣୀର ଶୋଇବାଘର । ଉପର ଖଞ୍ଜାରେ ଶାଶୁ ରହନ୍ତି । ଉପର ଖଞ୍ଜା ପିଣ୍ଡାରେ, ସପ ପକେଇ ସେ'ବସିଥିବେ । ସେଇପଟ ଦୁଆରେ ପିଲାମାନେ ହୋ-ହୋ ହେଉଛନ୍ତି । ଖୁବ୍ ଖୁସିରେ ଖେଳୁଛନ୍ତି ।

ବାଣୀ ପାଦ ଚିପି ଚିପି ଉପରକୁ ଉଠିଯାଏ ।

ପିଲାମାନେ ଦେଖିଲେ ପାଟି କରିବେ । ହେଇଟି ବୋଉ- ହେଇଟି ବଡ଼ବୋଉ । ହେଇଟି ଖୁଡ଼ୀ ଛାତ ଉପରକୁ ଗଲେ । ଦଉଡ଼ି ଆସିବେ । ହେଇଟି ତା'ପରେ ବାଣୀର ଛାତକୁ ଯିବା ବନ୍ଦ । ତେଣୁ ଏଇ କାମଟି ତାକୁ ଚୁପ୍‌ଚାପ ସନ୍ତର୍ପଣରେ କରିବାକୁ ପଡ଼େ ।

ତା'ର ଏପରି ଅବସ୍ଥା ଦେଖି ତିନିଯାଆଯାକ ଅନୁଚ୍ଚ ସ୍ୱରରେ ହସି ଉଠନ୍ତି । ପରିହାସ କରନ୍ତି, ଉପରେ ଏକୁଟିଆଟା ବସି ବସି କ'ଣ କର ? କ'ଣ ଦେଖ ? ଆମକୁ ଟିକିଏ କୁହ ଭଲା । ସାଙ୍ଗରେ ହେଲେ ଭାଇଙ୍କୁ ନିଅ ।

ତା'ପରେ ହାତ ଯୋଡ଼ି ପିତୁ କହେ, ହେ ଅପା, ତମ ଗୋଡ଼ତଳେ ପଡୁଛି । ଭାଇଙ୍କି କହିବ ନାହିଁଟି । ମୋ' ରାଣ ମୁଁ ମଲା ପରି ।

ଅଦ୍‌ଭୁତ ଭଙ୍ଗୀରେ ବେକ ଭାଙ୍ଗି ଚାହେଁ ବାଣୀ । ଭ୍ରୂଲତା ବଙ୍କେଇ କଣେଇ ଚାହେଁ । ମିଠା ମିଠା ବଙ୍କା ହସ ହସି କହେ, ତମ ଦେଢ଼ଶୁରଙ୍କୁ ? ତାଙ୍କୁ ନେବି କ'ଣ ଗିଜିରି ଗିଜିରି ହୋଇ କଜି ଲଗେଇବେ ବୋଲି ? ଅଫିସ୍ ଗପ ଶୁଣିବି ବୋଲି ?

ହସି ଦେଇ ସନ୍ତର୍ପଣରେ ପାହାଚ ପାହାଚ ହୋଇ ଉପରକୁ ଉଠିଯାଏ । ଯାଆ ମାନଙ୍କ ମିଠା ହସ ତା' କାନରେ ବାଜେ । ସୁମି କହିବାର ସେ ଶୁଣେ, ଅପାଙ୍କର ଯୋଉ କଥା !

ସାଧାରଣତଃ ଶାଶୂ ଘରେ ସମସ୍ତେ ଅଣନିଃଶ୍ୱାସୀ ହୋଇପଡନ୍ତି । ହେଲେ ବାଣୀର ସେମିତି କେବେ ହୋଇ ନାହିଁ । ବରଂ ସେ ଗାଁକୁ ଆସିଲେ ଦାୟିତ୍ୱଶୂନ୍ୟ, ହାଲୁକା ହାଲୁକା ଲାଗେ ତାକୁ, ଉଶ୍ୱାସ ଲାଗେ । ଫଳରେ ସେ ଖୁସି ରହେ । କ'ଣ ରନ୍ଧା ହେବ ଶାଶୂ କହନ୍ତି । ସାନଯାଆ ରାନ୍ଧନ୍ତି । ତାକୁ କାମ କରିବାକୁ ଛାଡି ଦିଅନ୍ତି ନାହିଁ । ସେ ରନ୍ଧା ଘରକୁ ଗଲେ ସୁମି ତା' ହାତଧରି ଟାଣି ଟାଣି ଆଣି ଘରପିଣ୍ଡାରେ ବସେଇ ଦିଏ । କହେ, ଏଇଠି ବସ । ଆମକୁ ଗପ କହ । ତମର କାମ କରିବା ଦରକାର ନାହିଁ ।

ବାଣୀ ବସି ବସି ଯାଆମାନଙ୍କ କାମ କରିବା ଦେଖେ । ଦେଖେ, ସେମାନେ କେମିତି ଯାଉଛନ୍ତି, ଆସୁଛନ୍ତି । ତାକୁ ଚାହିଁ ହସୁଛନ୍ତି । ଖୁସି ହେଉଛନ୍ତି । ତା'ମନ ଖୁସିରେ ପୂରିଯାଏ ।

ଶୂନ୍ୟକୁ ଚିରି ଦେଇ କଳା ଗାରଟାଏ ଟାଣି ବାଦୁଡ଼ି ଦି'ଟା ଉଡ଼ିଗଲେ । ବାଣୀ ଚାହିଁଲା ଆକାଶ କେମିତି ଫିକାଳିଆ ନେଳି ଦିଶୁଛି । ଆଉ ଗାଢ଼ନୀଳ ଦିଶୁନାହିଁ । ନଡିଆ ବାହୁଙ୍ଗା ଉପରେ ଜହ୍ନ ଆଲୁଅ ପଡ଼ି ଚିକ୍ ଚିକ୍ କରୁଛି । ଯେମିତିକି ଜହ୍ନ ଆଲୁଅ ଖସି ପଡ଼ି ଝରି ଯାଉଛି ।

ନଡିଆ ବାହୁଙ୍ଗା ଉପରେ ଜହ୍ନ ଆଲୁଅ ଏମିତି ଦିଶେ କାହିଁକି ? କିଏ ଯେମିତି ଦୌଡ଼ି ଦୌଡ଼ି ପାହାଚ ଉଠି ଆସୁଛି । ଦ୍ରୁମ୍‌ଦ୍ରୁମ୍ ପାଦ ଶବ୍ଦରେ ଛାତଟା କମ୍ପିଗଲା ।

କିଏ ? ବାଣୀ ପଛକୁ ଚାହିଁଲା ।

ବଡ଼ଖୁଡୀ, ବଡ଼ଖୁଡୀମ, ଏଇ ଶୁଣୁଚ, ଶୁଣ ଶୁଣ, ଆମ ବଡ଼ଦିଦି ତମ ପାଖକୁ ଆସିଛନ୍ତି । ଆସ - ଚଞ୍ଚଳ ଆସ - ଧଁ ସଁ ହୋଇ ଫେନୁ କହିଲା ।

ସେପାଖ ସାଇ ଦେଢ଼ଶୁରଙ୍କ ସାନଝିଅ ।

ବାଣୀ ଚମକି ପଡ଼ିଲା । କହିଲା, ତମ ବଡ଼ ଦିଦି ? କିଏ ସେ ? ମୋ ପାଖକୁ କାଇଁ ଆସିବେ ? ତମେ ଜାଣି ନଥିବ ଫେନୁ । ସେ ଆଉ କାହାକୁ ଖୋଜୁଥିବେ ।

ବିଦ୍ୟାରାଣ ଲୋ ବଡ଼ଖୁଡୀ । ତମରି ପାଖକୁ ଆସିଛନ୍ତି ପରା ! ବଡ଼ଦାଦାଙ୍କ ସାଙ୍ଗରେ ଆସିଛନ୍ତି । ତମେ ଚଞ୍ଚଳ ଆସ । ବୋପାଲୋ, ତାକୁ ଦେଖିଲେ ଭାରି ଡର ମାଡ଼େ । ତମେ ଆସିଲ - ଫେନୁ ବାଣୀ ହାତ ଧରି ଟାଣିଲା ।

ବାଣୀ ପଚାରିଲା କ'ଣ ଖୁବ୍ ରାଗୀ ତମ ବଡ଼ଦିଦି ?

ନା, ରାଗୀ ନୁହନ୍ତି ଯେ - ହେଲେ ଡ଼ର ତ ଲାଗେ । ତା'ପରେ ସେ ଅଧୈର୍ଯ୍ୟ ହେଲା ପରି ଦୁଇହାତ ହଲେଇ କହିଲା, ତମେ ଚଞ୍ଚଳ ଆସିଲ । ଆସ ।

ବାଣୀ ଫେନୁ ପଛେ ପଛେ ଆସିଲା ।

ଭାବିଲା, କିଏ ସେ ବଡ଼ଦିଦି ! କିଏ ଆସିଛନ୍ତି ତା'ପାଖକୁ ! ତା'ପାଖରେ ବା କ'ଣ କାମ ! କେଜାଣି । କିଏ କୋଉ ଚିହ୍ନା ପରିଚିତ ହୋଇଥିବେ ।

ଏଥର ଗାଁକୁ ଆସି ସେ ଅବଶ୍ୟ ପିଲାମାନଙ୍କଠାରୁ ଶୁଣିଥିଲା, ନୂଆ ବଡ଼ଦିଦି ଜଣେ ଆସିଛନ୍ତି । ଭାରି କଡ଼ା ଲୋକ । ହେଲେ ଖୁବ୍ ଭଲ ପଢ଼ାନ୍ତି । ସେ' ସ୍କୁଲକୁ ଆସିବା ଦିନଠାରୁ ସ୍କୁଲରେ ପଢ଼ାପଢ଼ି ଭଲ ହେଉଛି । ଆଉ ବି ସବୁ ଦିଗକୁ ତାଙ୍କର ନଜର । ସ୍କୁଲ ହତାରେ ପାଣି ନଥିବାରୁ ପିଲାମାନେ ହଇରାଣ ହେଉଥିଲେ । କୋଉ କାଳର କୂଅଟାଏ ଭଙ୍ଗା ପାଚେରି ପାଖରେ ଅସାର ଅବସ୍ଥାରେ ପଡ଼ିଛି । ଯିଏ ସେଥିରୁ ଥରେ ପାଣି ପିଇବ ସେ ନିମୋନିଆରେ ମରିବ । ବଡ଼ ଦିଦି ହତା ଭିତରେ ଟ୍ୟୁବ୍ ୱେଲ୍ ବସେଇଛନ୍ତି । ପାଚେରି କରିଛନ୍ତି । ପାଚେରି ଉପରେ ଲୁହା ବସେଇ କଣ୍ଟାତାର ବୁଲେଇଛନ୍ତି । ହଷ୍ଟେଲ୍ ହେବ । ସାଇ ପିଲାଙ୍କ ପାଖରୁ ଏସବୁ ଶୁଣି ବାଣୀ ଖୁସି ହୋଇଗଲା । ଘର ମୁରବୀ ଟାଣୁଆ ଥିଲେ, ଭଲ ହେଲେ, ଘରଟା ଯେପରି ଭଲରେ ଚଳେ । ସ୍କୁଲର ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀ ଭଲ ହେଲେ ପିଲାମାନଙ୍କର ଭାଗ୍ୟ ବି ଭଲ ହୋଇଥାଏ । ଏ କଥା କିଏ ନଜାଣେ ?

ଶୋଇବା ଘର ଦୁଆର ମୁହଁରେ ପହଞ୍ଚିବା କ୍ଷଣି ସ୍ୱାମୀ କହିଲେ, ଦେଖତ, କିଏ ଆସିଛନ୍ତି !

ବାଣୀ ଘର ଭିତରକୁ ଚାହିଁ ଦେଇ ଆନନ୍ଦରେ ପାଟିକରି ଉଠିଲା, ଇରେ ତୁ'............ତୁ'.........ଏଠି କେମିତି........! ତା'ପରେ କୁଣ୍ଢେଇ ପକେଇଲା ।

ଦୀର୍ଘ ବାରବର୍ଷ ପରେ ଦୁଇ ବାନ୍ଧବୀଙ୍କର ଦେଖାହେଲା ।

କିନ୍ତୁ କିଏ କାହାରିକୁ ଚିହ୍ନିବାକୁ ଡ଼େରି ହେଲା ନାହିଁ । ଯେମିତିକି ଏଇ କେତେ ଦିନ ପୂର୍ବରୁ ଅନ୍ୟତ୍ର ଦେଖା ହୋଇଥିଲା !

ଆବାସୀ କହିଲା, ବହୁତ ଦିନ ପରେ ଦେଖା ହେଲା ନା'ରେ ?

ବାବା ! ଗୋଟାଏ ଯୁଗ କହିଲେ ଚଳେ । ହେଲେ ତୁ ଏଠି କେମିତି ଯେ- ବାଣୀ କଥାରେ ତା' ସ୍ୱାମୀ ହସି ହସି କହିଲେ, ଏଠା ଗାର୍ଲସ୍ ହାଇସ୍କୁଲ୍‌ରେ ହେଡ୍

ମିସ୍ତ୍ରେସ ପରା ସେ' ! ତା'ପରେ କହିଲେ ତାଙ୍କୁ ଆଗ ବସିବାକୁ ଦିଅ । ପରେ ଗପ କରିବ ।

ବାଣୀ ଆବାସୀକୁ ଜାବୁଡ଼ି ଧରି ଦୋହଲାଇ ଦେଇ କହିଲା, ସତେ ତୁ .....ସତେ ତୁ.....ଓଃ.....ମୁଁ ତ ଭାବି ପାରୁନାହିଁ ।

ଆବାସୀଠାରେ ସମର୍ପିତାର ସମସ୍ତ ଚିହ୍ନ ଫୁଟି ଉଠିଲା ।

ସେ କହିଲା, ଆରେ ମୁଁ ନୁହେଁ ତ ଆଉ କ'ଣ ମୋ ଭୂତ.........!

ବାଣୀର ସ୍ୱାମୀ କହିଲେ, ଖାଲି ଗପୁଥିବ ନା କଣ ?

ଉତ୍ତରରେ ବାଣୀ କହିଲା, ଗପିଲି କେତେବେଳେ ! ପଚାରୁଛି ତ ! ବାଣୀ ଏକଥା କହିଲା ସିନା ହେଲେ ତା' ମୁହଁରେ ଲଜ୍ଜାର ଆଭା ଫୁଟି ଉଠିଲା । ସେ' ଆବାସୀକୁ ଖଟ ଉପରେ ବସେଇ ଦେଇ କହିଲା, ବସ୍ । ମୁଁ ଆସୁଛି ।

ଆବାସୀ ବାଣୀର ହାତଧରି କହିଲା, ତୋର ଯିବା ଦରକାର ନାହିଁ । ଅଯଥା ତୁ ବ୍ୟସ୍ତ ହଅନା ।

ତା'ପରେ ହସି ଦେଇ କହିଲା, ହେଇ ତ, ତତେ ବ୍ୟସ୍ତ ନକରିବା ପାଇଁ ତୋ ଯା' ସର୍ବତ କରି ପଠେଇ ଦେଲେଣି । ଇଏ ତୋ' ଝିଅ ?

ଝିଅଟି ହାତରୁ ସର୍ବତ ଆଣି ଆବାସୀ ତାକୁ ପାଖରେ ବସେଇଲା । ନାଆଁ ପଚାରିଲା । କେଉଁ କ୍ଲାସ୍‌ରେ ପଢୁଛି ପଚାରିଲା । ଅନ୍ୟ ପିଲାମାନେ କବାଟ ଫାଙ୍କରେ ମୁହଁ ଦେଖେଇ ଲୁଚି ଯାଉଥାନ୍ତି । କିଲି କିଲି ହୋଇ ଦୌଡ଼ି ପାଖ ଘରେ ପଶି ଯାଉଥାନ୍ତି ।

ତମେ ଗପ ଭିତରେ ମଜ୍ଜି ଯିବ ନାହିଁ । ରୋଷେଇ ଖବର ବୁଝିବ । ମୁଁ ଆସୁଛି କହି ବାଣୀର ସ୍ୱାମୀ ଚାଲିଗଲେ । ତାଙ୍କ ପଛେ ପଛେ ବାଣୀ ବି ଚାଲି ଯାଉଥିଲା । ଆବାସୀ କହିଲା, 'ମୁଁ ପଖାଳ ଖାଇବି । ବଡ଼ି ଚୂରା ବାଇଗଣ ପୋଡ଼ା ହେବ ।'

ଆବାସୀ କଥାରେ ସବୁ ପିଲା ହସି ଉଠିଲେ । ପୁଣି ଥରେ ଉଙ୍କିମାରି ଲୁଚି ଗଲେ । ଆବାସୀ ସମସ୍ତଙ୍କୁ ପାଖକୁ ଡାକିଲା । ହେଲେ କେହି ଜଣେ ବି ପାଖକୁ ନଆସି ଯିଏ ଯେଉଁଆଡ଼େ କିଲିକିଲି ହୋଇ ଦୌଡ଼ି ପଳେଇଲେ ।

ବାଣୀ ହସି ହସି କହିଲା, ଜାଣି ତ ଦିଦିମାନଙ୍କୁ ଡ଼ର । ତହିଁରେ ପୁଣି ଖୋଦ୍ ବଡ଼ଦିଦି । ବାବା ! କି ଡ଼ର ! ପିଲାମାନଙ୍କୁ କହିଲେ, ପିଲାଏ ପଛକେ ବଣରୁ ବାଘଦୁଧ ଆଣିବାକୁ ସାହସ କରିବେ । ହେଲେ ବଡ଼ ଦିଦି ? ମୋ ମା' କିଲୋ ! ତାଙ୍କ ସାମ୍ନାକୁ ଆସିବ କିଏ ?

ଆବାସୀ ହସିଉଠିଲା ।

ବାଣୀ ସାଙ୍ଗରେ ସେ ପଦାକୁ ଆସିଲା । ପିତୁ, ନିମା, ସୁମିଙ୍କ ସହିତ କଥାବାର୍ତ୍ତା କଲା । ଥଟ୍ଟା ମଜା କଲା । ଶାଶୁଙ୍କ ପାଖରେ ବସି ସୁଖ ଦୁଃଖ ହେଲା । ଜମିବାଡ଼ି, ଚାଷବାସ କଥା ପଚାରିଲା । ତା'ପରେ ସାଇପଡ଼ିଶା ବୁଲି ଆସିଲା । ନିଜ ସ୍କୁଲର ଛାତ୍ରୀମାନଙ୍କୁ ଦେଖି ସେ କହିଲା, କ'ଣ ? ପାଠପଢ଼ା ହେଉଛି ନା ରଜ ପାଇଁ କେଉଁ ଡିଜାଇନ୍‌ର ଜାମାପଟା ହେବ, କେତେ ଟଙ୍କାର ହେବ, ସେହି ସବୁର ସରଗରମ ଆଲୋଚନା ଖାଲି ହେଉଛି ?

ସମସ୍ତେ ଆବାସୀର ପ୍ରଶଂସାରେ ମୁଖର ହୋଇ ପଡ଼ିଲେ ।

ସତରେ, ଆବାସୀ ଭାରି ଭଲ ଝିଅ ! ରୂପ ଯେମିତି ଗୁଣ ସେମିତି ! ପ୍ରକୃତ ବୟସ ଠାରୁ ସବୁବେଳେ ସେ ପଛରେ ହିଁ ଥାଏ । ଈଷତ୍ ଲମ୍ୱାଳିଆ ପତଳା ଚେହେରା, ମୁହଁଟି ପାନପତ୍ର ପରି । ଆଖି ଦୁଇଟି ଟିକେ ବଡ଼ ବଡ଼ । ଆଖିର ଚାହାଣୀ ନିର୍ମଳ ଓ ଉଜ୍ଜ୍ୱଳ କୁଞ୍ଚୁକୁଞ୍ଚିଆ ମୋଟା କେଶଗୁଚ୍ଛ । ବେଣୀ ଲମ୍ବା ନହେଲେ ମଧ୍ୟ ଛୋଟ ନୁହେଁ । ମୋଟା ଓଠରେ ହସ ଲାଗି ରହିଥାଏ । ଅପୂର୍ବ ସୁନ୍ଦରୀ ନହେଲେ ବି ଏସବୁ ମିଶି ସେ ସୁନ୍ଦର ଦିଶେ । ଦୃଷ୍ଟି ଆକର୍ଷଣ କରେ । ତା'ର ସାମଗ୍ରିକ ଚେହେରାରେ ଗୋଟାଏ ବ୍ୟକ୍ତିତ୍ୱ ଅଛି । କେବଳ ଏତିକି ନୁହେଁ, ମନଟା ବି ତା'ର ତାରୁଣ୍ୟରେ ଭରା । କଥାରେ ମଧୁର ଭାବାବେଗ ବେଶ୍ ଫୁଟେଇ ପାରେ ସେ । ଏଥିପାଇଁ ତା'ର ସାହଚର୍ଯ୍ୟ ସର୍ବଦା ସୁଖପୂର୍ଣ୍ଣ ହୁଏ । ତା'ପାଖରେ ବସି ଗପ କରିବାକୁ ଭଲ ଲାଗେ । ତା'ର ସାନ୍ନିଧ ଅନେକଟା ଶାନ୍ତ, ମଧୁର କରିଦିଏ ନିଜକୁ ।

ସେ ସମସ୍ତଙ୍କ ସହିତ ସହଜରେ ମିଶିପାରୁଥିଲା । ସମସ୍ତଙ୍କୁ ଆପଣାର କରି ନେଇ ପାରୁଥିଲା । ହେଲେ ସବୁ ସାଙ୍ଗସାଥୀ ମାନଙ୍କ ଭିତରେ ବାଣୀ ସହିତ ହିଁ ତା'ର ଅନ୍ତରଙ୍ଗତା ଥିଲା ସବୁଠାରୁ ବେଶୀ । ଦୁହିଁଙ୍କର ମନମେଳ ଥିଲା ଖୁବ୍ ।

କୋଠାଛାତ ଉପରେ ଠିଆହୋଇ ଆବାସୀ କହିଲା, କି ଚମତ୍କାର !

ତା'ପରେ ସେ ଚାରିଆଡକୁ ବୁଲି ଚାହିଁଲା । କହିଲା, କେଡ଼େ ସୁନ୍ଦର ଦିଶୁଛି ଲୋ ବାଣୀ । ମନ ଭରି ଯାଉଛି । ରାତିର ଏ ରୂପକୁ ଯିଏ ନଦେଖିଛି ସିଏ କ'ଣ ଖାଲି ବହିରେ ପଢ଼ି ଏସବୁକୁ କଳ୍ପନା କରିପାରିବ ? ଏ ଦୃଶ୍ୟ ତ ଯିଏ କବି ନୁହଁ ତାକୁ କବି କରିଦେବ । ଆଉ ତୁ'ତ ଜାଣି..........

ବାଣୀ ତା' ହାତ ଧରି କହିଲା, ଆ' । ଏଇଠି ବସିବା ।

ଆବାସୀ କହିଲା, ରହ । ମୁଁ ଆଗ ଦେଖି ସାରେ । ସତରେ, କି ଚମତ୍କାର ଦିଶୁଛି ।

ହଉ ଦେଖ୍ । କେତେ ଦେଖୁଛୁ ଦେଖ୍ । ବାଣୀ ଗୋଟାଏ କଣକୁ ଆଉଜିବସିଲା ।

ନଈ ପାଖ ଝଙ୍କାଳିଆ ଗଛବୃଛକୁ ଚାହିଁ ଠିଆହେଲା ଆବାସୀ, ଚାରିଆଡ଼ ନିର୍ଜନ । ଘରେ ସମସ୍ତେ ଶୋଇ ସାରିଲେଣି । ସମସ୍ତେ ଶୋଇ ସାରିବା ପରେ ସେମାନେ କୋଠାଛାତ ଉପରକୁ ଆସିଛନ୍ତି । ନିର୍ଜନ ନିଶୀଥରେ କର୍ପୂର ଗୁଣ୍ଡି ଛିଞ୍ଚା ରଜ ଧରଣୀକୁ ଚାହିଁ ବିମୋହିତ ହୋଇପଡ଼ିଲା ଆବାସୀ ।

ରାସ୍ତା ସେ ପାଖରେ ଧାନକଳ ଘର । ତା' ପଛକୁ ବିସ୍ତୀର୍ଣ୍ଣ ପ୍ରାନ୍ତର । ପ୍ରାନ୍ତର ଶେଷରେ ଧାଡ଼ି ଧାଡ଼ି ଘର ଦିଶୁଛି । ଧାନକଳ ଘର ପାଖରେ ବିରାଟ ତେନ୍ତୁଳି ଗଛଟା ଭୁତୁରାମୁଣ୍ଡା ଭୂତଟେ ହୋଇ ଠିଆ ହୋଇଛି । ଗଛର ଟିକେ ଆଗକୁ ପୋଲ । ଏଇ ରାସ୍ତାଟା କଟକ - ପାରାଦୀପ ରାସ୍ତାରୁ ବାହାରି ଲମ୍ବିଯାଇଛି ଶାରଳା ଠାକୁରାଣୀଙ୍କ ମନ୍ଦିର ଯାଏ ।

ଆବାସୀ ବାଣୀ ପାଖରେ ବସିଲା ।

ବାଣୀ କହିଲା, ଦେଖା ସରିଲା ?

ଆବାସୀ ହସିଲା । କହିଲା, ପ୍ରକୃତିକୁ ଦେଖିବା କ'ଣ ଶେଷ ହୁଏ ବାଣୀ ? ପୁଣି ଏ ନିର୍ଜନତାର ଦେଖା ! ଏ ନିର୍ଜନତା ନିଜ ମହିମାରେ ନିଜେ ମଗ୍ନ ହୋଇଯିବାର ଏ ରୂପ ! ଏମିତି ମୁହୂର୍ତ୍ତ ମାନଙ୍କରେ ହିଁ ତ ଦେଖିହୁଏ ! ଅନୁଭବ କରିହୁଏ । କୁହେଁଲୋ ?

ତା'ପରେ ସେ ଗୁଣୁଗୁଣୁ ହୋଇ ଭଜନ ସଙ୍ଗୀତର ସ୍ୱର ଧରିଲା । ଆସ୍ତେ ଆସ୍ତେ ଧୀରେ ଧୀରେ ମୁଣ୍ଡ ହଲେଇଲା ।

ଆବାସୀର କଣ୍ଠସ୍ୱର ମଧୁର । ସେ ଗୀତ ଭଲ ପାଏ । ସ୍କୁଲ୍ କଲେଜରେ ଗୀତ ଗାଇ ସେ ପୁରସ୍କୃତ ହୋଇଛି । କପ୍ ପାଇଛି । ଦୁହେଁ ଏକାଠି ବସିବାମାତ୍ରେ ସେ' ଗୀତ ଗାଇବା ଆରମ୍ଭ କରିଦିଏ । ବାଣୀକୁ ଖୁବ୍ ଭଲ ଲାଗେ । କିନ୍ତୁ ଆବାସୀ ଗୀତ ଗାଇବା ତ ଶିଖିଲା ନାହିଁ । ଯାହା ଗାଉଥିଲା, ଧୀରେ ଧୀରେ ତାକୁ ଛାଡ଼ି ଦେଲା । ଅଭ୍ୟାସ ରଖିଲା ନାହିଁ । ଆଇ.ଏ. ପରେ ସେମାନେ ଅଲଗା ହୋଇଗଲେ । ଆବାସୀ ସାଇକୋଲୋଜି ଅନର୍ସ ନେଇ ବରହମ୍ପୁରରେ ପଢ଼ିବାକୁ ଚାଲିଗଲା । ବାଣୀ ସେହି ଜୟପୁର କଲେଜରେ ପଢ଼ିଲା ।

ଦଶହରା ଛୁଟିରେ ଦୁହିଁଙ୍କର ଦେଖାହେଲା । ଖାଲି ଖୁସି ଗପରେ ଦିନ କଟିଗଲା । ଛୁଟି ଶେଷରେ ଆବାସୀ ଚାଲିଗଲା । ଦୁଇ ବଖୁରିଆ ଘରଟିଏ ଭଡ଼ାନେଇ ପାଞ୍ଚଜଣ ଝିଅ ମେସ୍ କରି ରହୁଥିଲେ । ବାରଣ୍ଡାରେ ରୋଷେଇ ହୁଏ । ଅତି କଷ୍ଟରେ ଆବାସୀ ଚଳୁଥିଲା । ପ୍ରତି ଛୁଟିରେ ସେ ଆସେ ନାହିଁ । ଆସିପାରେ ନାହିଁ । ପଢ଼ାପଢ଼ି କରେ ।

ପ୍ରକୃତରେ ଆବାସୀର କେଉଁ ଗୁଣକୁ ବି ବାଣୀ ସରି ନଥିଲା ।

ଆବାସୀ ଅନେକ ଭଲ ଗୁଣର ଅଧିକାରିଣୀ ଥିଲା । ଭଲ ପଢୁଥିଲା । ଗୀତ ଭଲ ଗାଉଥିଲା । କେବେ କେମିତି ଚିତ୍ର ମଧ ଆଙ୍କେ । ବହିପତ୍ର ଓ ପତ୍ରପତ୍ରିକା ପଢ଼ିବା ତା'ର ଗୋଟାଏ ବଡ଼ ନିଶା । ରାତିରାତି ଅନିଦ୍ରା ରହି ସେ ବହି ପଢ଼େ ।

ତେବେ ଖାଲି ଯେ ସେ ସମୟ ବିତେଇବା ପାଇଁ ପଢ଼ିଦିଏ ତା' ନୁହଁ । ମନେ ରଖେ । ଆଲୋଚନା କରେ । ସାହିତ୍ୟ,ସଂସ୍କୃତି ସମ୍ବନ୍ଧରେ ତାର ଖୁବ୍ ରୁଚି ଓ ଭଲ ଧାରଣା ଅଛି । ସେ କଳାର ଜଣେ ବଡ଼ ସମଝଦାର । ଏସବୁ ପରେ ବି ସେ ସମୟକରି ସାୟାଲେଶ ବୁଣେ । ଟେବୁଲ୍ କ୍ଲଥରେ ଫୁଲ ପକାଏ । ଫଟୋ ତିଆରି କରେ । ନିଜେ ବ୍ଲାଉଜ ସିଲେଇ କରେ । ସବୁଥିରେ ସେ ପାରଙ୍ଗମ । ଗୀତ ଶିଖିଥିଲେ ନିଶ୍ଚୟ ଭଲ ଗାୟିକାଟିଏ ହୋଇପାରିଥାନ୍ତା । ତା' ନକରି ବି.ଏ. ପାଶ୍‌କରି ଚାକିରି କଲା । କହିଲା, ଏଣିକି ଖାଇ ପିଇ ଶୋଇ ଜୀବନର ଅବଶିଷ୍ଟ ଦିନଗୁଡ଼ାକ କଟେଇ ଦେବି । ଆଉ ମହାପୁରୁଷମାନଙ୍କ ଜୀବନୀ ପଢ଼ିବି ।

ବାଣୀର ବାହାଘର ଦୁଇବର୍ଷ ପରେ ଦୁହିଁଙ୍କର ଦେଖା ହୋଇଥିଲା । ଛୁଟିରେ ଆବାସୀ ବାଣୀ ପାଖକୁ ଯାଇଥିଲା । ବାଣୀ କହିଲା, ଜୀବନଟାକୁ ଏମିତି ବିତେଇଦେଲୁ ! ଆମ ପାଖରେ ସିନା କିଛି ନଥିଲା ବୋଲି ଆମେ ସେଇ ରାନ୍ଧିବାଢ଼ି ଖାଇପିଇ ଶୋଇପଡ଼ିବାକୁ ହିଁ ଜୀବନ କରିନେଲୁ । ସେଇ ଶଗଡ଼ ଗୁଳା ବାଟରେ ଗଡ଼ିଚାଲିଲୁ । ହେଲେ ତୁ..... ।

ହୋ' ହୋ' ହୋଇ ହସିଉଠିଲା ଆବାସୀ ।

ବାଃ.! ତୋ'କଥାରେ ତ କାବ୍ୟିକ ଭାବ ପ୍ରକାଶ ପାଉଛି ଲୋ । କାନକୁ ଭଲ ଶୁଭୁଛି ।

ବାଣୀ ରାଗିଗଲା । କହିଲା, ନେଣ୍ଡି ପେଣ୍ଡି ପଞ୍ଝାକୁ ଆଡ଼େଇ ଆଡ଼େଇ ଜଗି ରଖି ତୋ' ମୁଣ୍ଡ ଆଉ ନାହିଁ । ତୁ' କ'ଣ କରିବୁ !

ବାଣୀର ରାଗିଲା ମୁହଁକୁ ଚାହିଁ ପୁଣି ଥରେ ହସିଉଠିଲା ଆବାସୀ । କହିଲା,

ସତରେ ତୋ'ର ବୁଦ୍ଧିଶୁଦ୍ଧି ନାହିଁ ବାଣୀ ! ନେଣ୍ଡି ବୋଲି କାହାକୁ କହୁଛୁ ? ତୋ'କୋଳର ଦଶ ମାସର ଏଇ ନେଣ୍ଡିଟି ତ ଦିନେ ଆଠବର୍ଷର ହୋଇ ମୋରି ପାଖକୁ ଯିବ । ମୋ'ରି ଦୃଷ୍ଟି-ସୀମାରେ ଆଠବର୍ଷ ରହିବ । ତାକୁ ମଣିଷ କରିବ କିଏ ? ଛୋଟ ପିଲାକୁ ମଣିଷ କରି ଗଢ଼ିବାରେ ଯେଉଁ ଆନନ୍ଦ ଅଛି, ତୁ'ଟା କାହୁଁ ବୁଝିବୁ !

ତା'ପରଠାରୁ ଆଉ ଦେଖା ହୋଇ ନଥିଲା ।

ବାଣୀ କହିଲା, ନଈକୂଳର ଗୋଟାଏ ସିନେରୀ ମତେ ଆଙ୍କି ଦେବୁ । ଛୁଟି ତ ହୋଇଛି । ସମୟ ଥିବ ।

ସମୟ ତ ଏବେ ଆଉ ନଥାଏ । ସମୟ କରି ନେବାକୁ ହୁଏ । ତା' ଛଡ଼ା ମୁଁ ତ ଏବେ ଆଉ ଚିତ୍ର ଫିତ୍ର ଆଙ୍କୁ ନାହିଁ । ଆଉ ସେସବୁ ମୋ ଦ୍ୱାରା ହେବ ନାହିଁ ।

କାହିଁକି ? ଚିତ୍ର ଆଙ୍କୁ ନାହୁଁ କାହିଁକି ?

ଚିତ୍ର ଆଙ୍କିବା, ଗୀତ ଗାଇବା, ଗପ କବିତା ଲେଖିବା - ଏସବୁ ଗୋଟାଏ ଗୋଟାଏ କଳା । ସମସ୍ତଙ୍କ ଦ୍ୱାରା ସେସବୁ ହୁଏ ନାହିଁ । ଏକଥା କ'ଣ ଜାଣିନାହୁଁ ?

ବାଣୀ ମୁହଁ ହଲେଇଲା । କହିଲା, ପ୍ରାୟ ସମସ୍ତେ ତ ଆଜିକାଲି ଗପ କବିତା ଲେଖୁଛନ୍ତି । ହସିଲା ଆବାସୀ । ଲେଖୁଚନ୍ତି କିନ୍ତୁ କବି, ଲେଖକ ହୋଇ ପାରୁନାହାନ୍ତି । ରାମ୍ପୁଡ଼ିକାମୁଡ଼ି ହେଉଛନ୍ତି । କାଦୁଅ ଚକଟୁଛନ୍ତି ମାତ୍ର !

ତୁ' କିନ୍ତୁ ହୋଇ ପାରିଥାନ୍ତୁ ।

ସେଇଟା ତୋର ଭୁଲ୍ ଧାରଣା ବାଣୀ । ମୋ ନେଇ ତୋ'ମନରେ ଗୋଟିଏ ଭୁଲ୍ ଧାରଣା ରହିଯାଇଛି । ତୁ'ମତେ ଯେତେ ଭଲ ଯେତେ ବଡ଼ ବୋଲି ଭାବୁଛୁ ମୁଁ ପ୍ରକୃତରେ ତାହା ନୁହେଁ ।

ହେଲେ ବି.... ବାଣୀ କହିଲା, ହେଲେ ବି ତୁ'ଆମ ସମସ୍ତଙ୍କ ଅପେକ୍ଷା ସବୁଥିରେ ଭଲ ଥିଲୁ ।

ଏଁ, ଏବେ କ'ଣ ତେବେ ମନ୍ଦ ହୋଇଗଲି ? ଲଘୁ ସ୍ୱରରେ କହିଲା ଆବାସୀ ! ଝାଡ଼ି ହୋଇପଡ଼ି ହଲିଗଲା ।

ତୁ' ନିଜ ଉପରେ ଅତ୍ୟାଚାର କରିଛୁ । ନିଜକୁ ଅବହେଳା କରିଛୁ । ଆବାସୀ, ଦେହ ଝାଡ଼ି ପକେଇଲେ ମନ ଝାଡ଼ି ହୋଇଯିବ ନାହିଁ । ମୋର ଏତେ ରାଗ ଆସୁଛି ଯେ.....

ବାଣୀ ହାତ ପାପୁଲିକୁ ମୁଠେଇ ଧରିଲା ଆବାସୀ । କହିଲା, ...ବାଣୀରେ, ଅନେକ କଥା ସମ୍ପୂର୍ଣ୍ଣ ନିଜସ୍ୱ । ଏକାନ୍ତ ନିଜସ୍ୱ । ନିଜ ଭିତରର ତାଗିଦ୍‌ରେ ଏସବୁ ହୁଏ । ଭିତରର ତାଗିଦ୍ ନଥିଲେ କେବେ ହେଲେ ହେବ ନାହିଁ । ତା'ହୋଇଥିଲେ ଧନୀଘରର ପିଲାମାନେ ହିଁ ଯୁଗେଯୁଗେ କବି, ଗାୟକ, କଳାକାର ହୋଇଥାନ୍ତେ । ତା'ପରେ କହିଲା, ଛାଡ଼ ସେସବୁ କଥା । ଏ ବୟସରେ ସେସବୁରେ ମନ ନାହିଁ । ହଁ, କହ ଚ, କ'ଣ ସବୁ ଲେଖୁଛୁ ! କେତେଖଣ୍ଡ ବହି ବାହାରିଲାଣି ?

ଏଁ...... ହଠାତ୍ ଏମିତି ଢଙ୍ଗ ଯେ.... ବାଣୀ ହସିଲା ।

ଆଉ ତୁ କ'ଣ ଭାବିଥିଲୁ, ତୁ' ଖାଲି ମୋ'ରି ଉପରେ ସୁଅ ବୁହାଇବୁ ବୋଲି ?

କହ । ଏବେ କ'ଣ ଲେଖୁଛୁ । ବାଣୀ ହାତକୁ ଝୁଙ୍କେଇଦେଲା ଆବାସୀ । ଝଙ୍କାଳିଆ ତେନ୍ତୁଳି ଗଛଟାକୁ ଚାହିଁ ରହି ବାଣୀ କହିଲା, ଦେଖିଲୁ ଆବାସୀ, ଗଛଟା କେମିତି ଭୟଙ୍କର ଅନ୍ଧାରୁଆ ଦିଶୁଛି ।

ଆବାସୀ ହସିଲା । ତା' ହାତକୁ ହଲେଇ ଦେଇ କହିଲା, ମୁଁ ଗଛ କେମିତି ଦିଶୁଛି ପଚାରୁ ନାହିଁ । ତୋ' ଲେଖାଲେଖି କଥା ମାନେ ତୋ' ଗପ କବିତା କଥା ପଚାରୁଛି । ପ୍ରେମ, ଦାମ୍ପତ୍ୟ, ଭଲ ପାଇବାକୁ ନେଇ ବେଶ୍ ତ ଗପ ଲେଖୁଥିଲୁ । ଭଲ ହେଉଥିଲା । ଏଇ ଯନ୍ତ୍ରମୟ ଯୁଗରେ, ଜୀବନ ଯେଉଁଠି ଯାନ୍ତ୍ରିକ ହୋଇଗଲାଣି, ସେଇଠି, ସେହି ସମୟରେ ତୋର ପୂର୍ବଲେଖା ଗପଗୁଡ଼ିକ ବେଶ୍ ଉପଯୋଗୀ । ମୋଡ଼ ଘୂରେଇଲୁ କାହିଁକି ?

ମନେ ମନେ ଚମକି ପଡ଼ିଲା ବାଣୀ । ତା'ର ଲେଖା ସବୁ ଆବାସୀ ପଢ଼େ ନା କ'ଣ ! ସେ' ତ ଏକଥା ଜାଣି ନାହିଁ !

ଏଇ ବାଣୀ, ମୂକ ହୋଇଗଲୁ କିଲୋ !

ବାଣୀକୁ ଖୁବ୍ ଜୋର୍‌ରେ ଝୁଙ୍କେଇ ଦେଲା ଆବାସୀ ।

କ'ଣ କହିବି ?

କ'ଣ କହିବୁ ? ମାନେ ? ସଳଖି ଚାହିଁଲା ଆବାସୀ । ମୁରୁକି ହସିଲା ।

କି ଆଶ୍ଚର୍ଯ୍ୟ ! କିଲୋ ବାଣୀ, ତୁ' ଆଉ କେଉଁଦିନ ସଳଖ ହୋଇ ଠିଆ ହେବୁ ? ପିଲାଦିନେ ଯାହା, ବୋହୂ ହେଲୁ ତାହା, ଏ ବୁଢ଼ୀ ଦିନେ ବି ସେଇଆ ? ହାଏରେ ବିଧାତା ! ଲେଖୁଛୁ - କହିଲା ବେଳକୁ ଲାଜ ଲାଗୁଛି । କୁଣ୍ଠା ଆସୁଛି ।

ଯାଃ ! ସେମିତି କ'ଣ କହୁଛୁ ! ଯୋଉ ଗପ ତ !

ଆବାସୀକୁ ପେଲି ଦେଲା ବାଣୀ ।

ଚମତ୍କାର ! ଖୁବ୍ ଚମତ୍କାର ! ତୋ' ଗପଠାରୁ ତୁ' ଆହୁରି କଅଁଳ ! ଭଲ । ଖୁବ୍ ଭଲ । ଏମିତି କଅଁଳ ହୋଇ ସବୁଦିନେ ଥାଆ ! ତୋ' ଗପରେ ପ୍ରେମର ଯେଉଁ ସଲଜ୍ଜ ଗଭୀର ପରଶଟିଏ ଥାଏ ସେଇଟା ମତେ ମୁଗ୍ଧ କରେ । କେତେ ଥର ଭାବିଛି ତୋ' ପାଖକୁ ଆସିବି । ହେଲେ କିଛି ନା କିଛି ବାଧା ପାଇ ଅଟକି ଯାଉଛି । ତା'ପରେ ଦେଖିଲି, ଦେଖିଲି ତୋ ଗପର ମୋଡ଼ ଘୂରିଯାଉଛି । ସେହି କଅଁଳ ପ୍ରେମଟି, କଅଁଳ ଭାବଟି ରହୁଛି କିନ୍ତୁ ଘଟଣା ଭିତରେ ଆଚ୍ଛାଦିତ ହୋଇ ପଡୁଛି ।

ସବୁ ସମୟରେ ଏକପ୍ରକାର ଲେଖା ହୁଏ ନାହିଁ । ଲେଖିବା ଉଚିତ ନୁହେଁ । ଲେଖିବାକୁ ଭଲ ମଧ୍ୟ ଲାଗେ ନାହିଁ । ନୁହେଁ କି ? ପରିବର୍ତ୍ତନ ସୁଖପ୍ରଦ ।

ହଁ । ତା' ଠିକ୍ ! ତେବେ.....

ଆବାସୀ ଟିକେ ରହିଗଲା । ...... ଆଉ କିଛି ଦିନ, ତୋ' ଗପରେ କଅଁଳ ସଲଜ୍ଜ ଭାବଟି ରହିଥିଲେ କିଛି କ୍ଷତି ହୋଇ ନଥାନ୍ତା । ବୟସ୍କ ପାଠକଗଣ ଓ ବୟସ୍କାମାନେ ମଧ୍ୟ ମାନସିକ ଆନନ୍ଦ ପାଇଥାନ୍ତେ । ଏହା ଅବଶ୍ୟ ମୋର ବ୍ୟକ୍ତିଗତ ମତ । ତା'ପରେ ସେ କହିଲା, ତୁ ଅନ୍ୟ କିଛି ଭାବନା । ଏ ଯୁଗରେ ଅଶାନ୍ତ, ବିକ୍ଷିପ୍ତ ହୋଇପଡୁଛି ଦାମ୍ପତ୍ୟ-ଜୀବନ । ବିବାହର ବର୍ଷେ ଦି'ବର୍ଷ ପରେ ଯଜ୍ଞ-ହୋମ ଧୂଆଁର ବାସ୍ନା ଉଡ଼ିଯାଉଛି । ସ୍ଥଳ ବିଶେଷରେ ବର୍ଷେ ଦି'ବର୍ଷ ମଧ୍ୟ ଯାଉନାହିଁ । ଦାମ୍ପତ୍ୟଟା ହୋଇଉଠୁଛି ଯେମିତି କଲେଇଛଡ଼ା ଟିଣଥାଳି । ସେ ଦିଗରୁ ଦେଖିଲେ ତୋ' ଗପଗୁଡ଼ିକ ତ ଉଚ୍ଚ ମାନର ! ରସପୂର୍ଣ୍ଣ । ଆଉ....

କଥା ଛଡ଼େଇ ନେଇ ବାଣୀ କହିଲା, ଯାହା କହୁଛୁ ସେ ସବୁ କ'ଣ କ୍ଲାସ୍‌ରେ ପଢ଼ଉଛୁ କି ? ଏମିତି ସୁଖସ୍ପଷ୍ଟ ହୋଇଯାଇଛି ଯେ- !

ତା'ପରେ ସ୍ୱରକୁ ଟିକେ ଉଚ୍ଚକୁ ଉଠେଇ କହିଲା, ଏତେ କହି କହି ବାହା ହେଲୁ ନାହିଁ । ଆଉ ଦାମ୍ପତ୍ୟ-ଦାମ୍ପତ୍ୟ ହେଉଛୁ କାହିଁକି ? ସେ ବିଷୟରେ ଜାଣିଛୁ କ'ଣ ?

ବିବାହ କରିଥିବା ଲୋକଙ୍କ ଠାରୁ ବିବାହ କରି ନଥିବା ଲୋକମାନେ ହିଁ ଯେ ଦାମ୍ପତ୍ୟ-ଜୀବନ ଉପରେ ବେଶୀ କଥା ଜାଣିଛନ୍ତି, ଏ କଥା ତୁ' ଜାଣୁ ?

ସତେ ନା କ'ଣ ? ବାଣୀ କୌତୁକ କଲାପରି କହିଲା ।

ପରିହାସ କରୁଛୁ ତ ? ହସିଲା ଆବାସୀ । କହିଲା, ସେ ଯା' ହେଉ, ଏଥର ତୁ' ପ୍ରେମକୁ ନେଇ ଗୋଟିଏ ଉପନ୍ୟାସ ଲେଖ ।

ଧେତ୍ ! ଲାଜରା ହେଲା ବାଣୀ ! ସେ ସବୁ ଆଉ ହେବ ନାହିଁ ।

ହେବ ନାହିଁ ମାନେ ? ତୁ' ଜାଣିଛୁ ? ହେବ । ନିଶ୍ଚୟ ହେବ । ମୁଁ କହୁଛି ହେବ । ତୁ' ଲେଖ୍ ତ ! ନ ହେବ ବୋଲି ତୁ' କହୁଛୁ କାହିଁକି ? ହେବ । ହେବ । ତୁ' କଲମ ଧର ।

ଆବାସୀ ମୁହଁକୁ ବାଣୀ ଚାହିଁଥିଲା । କ'ଣ ବୁଝିଲା କେଜାଣି, କହିଲା, ତୁ' କହିବୁ ତ ? ତୁ' କାହାଣୀଟା କହିଦେଲେ ଲେଖିବାକୁ ଚେଷ୍ଟା କରିବି । ତେବେ ଭରସା ପାଉନାହିଁ । କହିବୁ ?

ହଁ ! ଦୀର୍ଘ ନିଃଶ୍ୱାସଟାକୁ ଯେମିତି ଚାପି ରଖିଲା ଆବାସୀ । ଧୀରେ, ଖୁବ୍ ଧୀରେ କହିଲା- ହଁ ରେ, ତୁ' ଲେଖ୍ । ମୁଁ କହିବି । ତୁ' ଲେଖିବୁ । ତା'ଆଗରୁ ଭାବି ଦେଖିବୁ ଏ ଯାନ୍ତ୍ରିକ ଯୁଗରେ ଆଧୁନିକତା ନାଆଁରେ ସାହିତ୍ୟରୁ ପ୍ରେମ କେମିତି ଉଭେଇ ଯାଉଛି । କିନ୍ତୁ ପ୍ରେମ ନଥିଲେ ଜୀବନ କାହିଁ ? ପ୍ରେମ ନଥିଲେ ଉଦାରତା କାହିଁ ? ମହାନୁଭବତା ବା କାହିଁ ?

ବାଣୀ ମନେମନେ କହିଲା, ବାଃ ! ସୁନ୍ଦର !

ପ୍ରେମ ଯେ ମଣିଷକୁ ମହତ କରେ, ନମ୍ର କରେ, ଉଦାର କରେ, ତ୍ୟାଗ କରିବାକୁ ଶିଖାଏ, ଏସବୁ ଆଜି କେବଳ ବହି ପୃଷ୍ଠାରେ ଅକ୍ଷର ହୋଇ ରହିଯାଇଛି । ମଣିଷ ଜୀବନରେ ରହୁନାହିଁ । ବର୍ତ୍ତମାନ ମଣିଷର ଦୁଇ ଆଖିରେ ଝଲସି ଉଠୁଛି ଅର୍ଥ ଆଉ ଯନ୍ତ୍ର ! ସେଇଥିପାଇଁ ସ୍ୱାର୍ଥପରତା ଭୋଗଲାଳସା ଭିତରେ ପ୍ରେମ ଆଜି ଦୁଃଖିନୀ ଅସହାୟା ନାରୀଟିଏ ପରି ଲୁହ ବୁହାଉଛି । ଯେମିତି କଂସର ଦୌରାତ୍ମ୍ୟରେ ବସୁନ୍ଧରା ।

କହୁ କହୁ ହସି ପକେଇଲା ଆବାସୀ ।

ବାଣୀ ବୁଝିଲା, ନିଜର ବକ୍ତବ୍ୟକୁ ଲଘୁ କରିବାକୁ ଯାଇ ଆବାସୀ ହସିଦେଲା । ହେଲେ କଥାଟାକୁ ତ ଏକ୍‌ବାରକେ ଅସ୍ୱୀକାର କରି ହେବ ନାହିଁ । ଆବାସୀ ସବୁଦିନେ ଏମିତି ନୂତନତ୍ୱ ଭରି କଥା କହିପାରେ । କହିବାର ଶୈଳୀଟି ତା'ର ଅତି ଆପଣାର ଓ ଅତି ସୁନ୍ଦର । ପୂର୍ବକଥାର ଖିଅ ଯୋଡ଼ିବାକୁ ବାଣୀ କହିଲା- କାନ୍ଦି କାନ୍ଦି ପ୍ରେମ ତୋରି ଆଗରେ ଗୁହାରି କରିଛି ନିଶ୍ଚୟ । ଯେମିତି କି ବିଧାତା ଆଗରେ ବସୁନ୍ଧରା । ସେ ମଧ ହସିଲା ।

ହସ ଚାପି ଆବାସୀ କହିଲା, ଅନେକଟା ସେହିପରି । ତୁ' ତାହା ହିଁ ଭାବି ଲେଖିବା ଆରମ୍ଭ କରିବୁ । ପ୍ରେମ ଏ ଯୁଗରେ ବିରଳ । ବୁଝିଲୁ ? 'ପ୍ରେମ' ସମ୍ବନ୍ଧରେ ଯାହା ଶୁଣୁଛୁ, 'ପ୍ରେମ' ବୋଲି ଯାହା ଦେଖୁଛୁ- ସବୁ ଭେଜାଲ ।

ତା' ମୁହଁରେ ଦୁଷ୍ଟାମୀ ହସ ଟିକିକ ଭାରି ମନୋରମ ଦିଶିଲା ।

ବାଣୀ କୃତ୍ରିମ ଭୟ ପାଇଲା ପରି, ବିସ୍ଫାରିତ ଆଖି କରି କହିଲା, ହାଏ ରାମ ! କ'ଣ ଭଞ୍ଜ ଯୁଗୀୟ ପ୍ରେମ କିଲୋ ? ନା ମାଧବ-ସୁଲୋଚନା ଉପାଖ୍ୟାନ ? ତେବେ ତୋ'କଥା ଅନୁସାରେ, ମୁଁ ଯାହା ଦେଖୁଛି, ଶୁଣୁଛି ସବୁ ଭେଜାଲ । ନିରୁତା 'ପ୍ରେମ' କଥା କିଛି ଶୁଣେଇଲୁ ! ଶୁଣିବା....

ନା ! ସେମିତି ସବୁ କିଛି ନୁହେଁ । ଆବାସୀ ମୁଣ୍ଡ ହଲେଇଲା ।

ତେବେ ?

ଏଇ ଯୁଗରେ ମୋ'ରି ପ୍ରେମ !

ନିଜ ଗଳାକୁ ଆଉଁସି, ଦୃଷ୍ଟି ବୁଲେଇ ନେଲା ଆବାସୀ ।

ଏ କ'ଣ କହୁଛୁ ? ସଳଖ ହୋଇ ବସିଲା ବାଣୀ । କହ – ବେଗି କହ । ତୋ' କଥା ଯଦି ମୁଁ ତ ପିଇଯିବି ଲୋ । ପେଟରେ ହଜମ ନହୋଇ ସେସବୁ ବାହାରିଲେ ହେଲା ! ସେ' ମୁରୁକି ହସିଲା । ଆଖି ନଚେଇଲା ।

ଥଟ୍ଟା ନୁହେଁଲୋ ବାଣୀ ! ସତ । ସବୁ ଶୁଣି ସାରି ଯାହା କହିବା କଥା କହିବୁ । ଯାହା କରିବା କଥା କରିବୁ ।

ଆବାସୀର କଣ୍ଠସ୍ୱର ଶୁଣି, ତା' ମୁହଁକୁ ଚାହିଁ ପ୍ରକୃତ କଥାଟି କ'ଣ ଅନୁମାନ କରିବାକୁ ଚେଷ୍ଟା କଲା ବାଣୀ ।

ନିରାଶ ହେଲା । ଆବାସୀର ମୁଖଭଙ୍ଗୀ ମଧ୍ୟରେ ମନୋଭାବ ପ୍ରକାଶ ପାଏ ନାହିଁ । ଆବାସୀ ଦୁଇ ଆଣ୍ଠୁ ଯୋଡ଼ି, ଇଷତ୍ ଗୋଡ଼ଭାଙ୍ଗି ବସିଛି । ଦୁଇ ଆଣ୍ଠୁ ଉପରେ ଦୁଇ ହାତକୁ ଛକ ପକେଇଲା ପରି ଥୋଇଛି । ଆଣ୍ଠୁ ଉପରେ ପାପୁଲି । ପାପୁଲି ଉପରେ ମୁହଁ । ସାମ୍ନାକୁ ଚାହିଁଛି । ଚାହିଁଛି ମାତ୍ର ! କିନ୍ତୁ କିଛି ଯେ ଦେଖୁଛି, ତା' ନୁହେଁ । ସୁନ୍ଦର ଦିଶୁଛି । ଯେମିତି କି ବିରହିଣୀଟିଏ ! ଦୁଷ୍ମନ୍ତ ପ୍ରଣୟୀ ଶକୁନ୍ତଳା କଣ୍ୱମୁନି ଆଶ୍ରମରେ ଏମିତି ବସିଥାନ୍ତି । ଟିକେ ଦୂରରେ ହରିଣୀ ଛୁଆଟେ ଠିଆ ହୋଇଥାଏ । ବିରହ ! ବିରହ !! ଆହା, କି ମାଧୁର୍ଯ୍ୟ ମଣ୍ଡିତ ଶବ୍ଦଟିଏ !

ଖୁବ୍ ଆସ୍ତେ ବାଣୀ କହିଲା, କ'ଣ କହିବୁ ପରା ?

ଭାବୁଛି ! କେମିତି ଭାବରେ, କେଉଁଠାରୁ କହିବି ।

ଓଃ ! ଏହାର ଆରମ୍ଭ ଅଛି । ଶେଷ ନାହିଁ । ମୋର ଏହା ହିଁ ମନେ ହେଉଛି । ବାଣୀ ଦାନ୍ତ ଚିପି ହସିଲା ।

ହଁ । ଠିକ୍ ସେଇଆ । ତେବେ ମୋ'ମତରେ ସବୁ ପ୍ରେମର ଆରମ୍ଭ ଥାଇ ଶେଷ ନଥାଏ । ଏହା ଘଟେ ପ୍ରକୃତ ପ୍ରେମ ପକ୍ଷରେ । କିନ୍ତୁ ପ୍ରେମ ସମସ୍ତଙ୍କ ପାଖରେ ବେଶୀଦିନ ଅପ୍ରାକୃତ ରହିପାରେ ନାହିଁ । ବଡ଼ ସହଜରେ, ବଡ଼ ଚଞ୍ଚଳ ବିକୃତ ହୋଇଯାଏ । ଭୋଗ, ଲିପ୍‌ସା, ଭିତରେ କାମରେ ପରିଣତ ହୁଏ । ଅବଶ୍ୟ ଏସବୁ କଥା ଏଠାରେ ଅବାନ୍ତର । ଯେଉଁଠି ଦେହ ଅଛି ସେଠି ସିନା କାମର ପ୍ରଶ୍ନ ଉଠିବ । କିନ୍ତୁ ଏ କ୍ଷେତ୍ରରେ କେବଳ ପ୍ରେମ !

କ'ଣ ତୁ' କହୁଛୁ ? ଏକ ପ୍ରକାର ଆତଙ୍କିତ ହୋଇପଡ଼ିଲା ବାଣୀ ।

ମଣିଷର ମନ ଖୁବ୍ ବିଚିତ୍ର ନା'ରେ ?

ତା'ପରେ ନିଃଶ୍ୱାସ ଛାଡ଼ି, ଆବାସୀ କହିଲା, ମୁଁ ବୁଝୁଛି । ଜାଣୁଛି । ଆପଣାକୁ ନିୟନ୍ତ୍ରଣ କରିପାରୁ ନାହିଁ । ବଡ଼ କଷ୍ଟ ! ବଡ଼ କଷ୍ଟ ହୁଏରେ ! ବଡ଼ ଯନ୍ତ୍ରଣା । ଏ ବିଶ୍ୱରେ ପ୍ରେମ ସମ୍ବନ୍ଧରେ ଯାହା ଲେଖା ହୋଇଛି ସେ ସବୁ କିଛି ନୁହେଁରେ ବାଣୀ । କିଛି ନୁହେଁ । ଶହେ ପଇସାରୁ ଗୋଟିଏ ପଇସା ବି ନୁହେଁ । ଯାହା ଅନୁଭବ ହୁଏ, ଯାହା ଉପଲବ୍ଧ ହୁଏ ତାକୁ କ'ଣ ଲେଖିହୁଏ ? ତାକୁ କ'ଣ କହି ହୁଏ ? ଅସମ୍ଭବ !

ଆବାସୀ ଚୁପ୍ ହୋଇଗଲା ।

ଅନେକ ସମୟ ନୀରବରେ କଟିଗଲା ।

କୋଠା ଛାତକୁ ଲାଗିଥିବା ପିଜୁଳି ଗଛରୁ ଶୁଖିଲା ପତ୍ର କେତେଟା ପବନରେ ଉଡ଼ିଆସିଲା । ଅନୁଚ୍ଚ ଶବ୍ଦ ହେଲା । ପତ୍ର କେତୋଟି ପରସ୍ପର ଭିତରେ ଏପାଖ ସେପାଖ ହେଲେ । ପବନରେ ଉଡ଼ିଯାଇ କୋଠା ତଳକୁ ଖସିପଡ଼ିଲେ । ବାଉଁଶ ଗଛରେ ପବନର ଝରଝର ଶବ୍ଦ ପରେ ପୁଣି ଚାରିଆଡ଼ ନିଃଶବ୍ଦତାରେ ଭରିଗଲା ! ପୁଣି ଚାରିଆଡ଼େ ଶୂନ୍‌ଶାନ !

ଆବାସୀର କଣ୍ଠସ୍ୱର ଯେମିତି କି ଗଭୀର ବାମ୍ଫିରୁ ଶୁଭିଲା ।

ମୋର ପିଲାଦିନ କଥା ତୁ' ତ ଜାଣିଛୁ ବାଣୀ । ସେ ଯେଉଁ ଦୁଃଖକଷ୍ଟ ଭିତରେ ମୋ ଦିନଗୁଡ଼ାକ ବିତିଛି, ଏବେ ମନେପଡ଼ିଲେ ସ୍ୱପ୍ନ ଦେଖିଲା ପରି ଲାଗେ । ମୋର ବହୁ ଭାଗ୍ୟରୁ ତୋ'ବାପା ରାୟଗଡ଼ାକୁ ବଦଳିହୋଇ ନ ଆସନ୍ତି ନା ମୋର ଭାଗ୍ୟ ନ ଫେରେ ! ତମେମାନେ ନ ଆସିଥିଲେ, ମୋର ଅବସ୍ଥା ଯେ ଆଜି କ'ଣ ହୋଇଥାନ୍ତା, ମୁଁ ଭାବି ପାରୁନାହିଁ । କେଉଁ ଗୋଟାଏ ତେଲେଙ୍ଗା ଗଳି ବସ୍ତିରେ ରହି, ପର ଘରେ

ବାସନ ମାଜି ଦିନ ବିତିଥାନ୍ତା । ମଦୁଆ ହାତରୁ ମାଡ଼ଖାଇ ଜୀବନଟା କେମିତି କଟିଥାନ୍ତା କିଏ ଜାଣେ !

ତେବେ ମୋର ଏବେ କ'ଣ ମନେ ହୁଏ ଜାଣୁ ? ମନେ ହୁଏ ତୋ'ରି କଥା ମାନି ନେଇଥିଲେ ଜୀବନ-ଦୁଃଖର ଏଇ କୌସ୍ତୁଭ ମଣିଟି ଅନ୍ତତଃ ହୃଦୟରେ ଝୁଲି ରହି ନଥାନ୍ତା !

ବାଣୀ ସତକୁ ସତ ଚମକି ପଡ଼ିଲା ! ଚମକିଲା ଆଖିରେ ଆବାସୀ ମୁହଁକୁ ଚାହିଁଲା । ତା' ଆଖିର ଅବୁଝା ଦୃଷ୍ଟି ପଚାରିଲା, କି କଥା ?

ତୋ' କଥା ମାନି ସାଇକୋଲୋଜି ପଢ଼ିବାକୁ ଯାଇ ନଥିଲେ ଭଲ ହୋଇଥାନ୍ତା ବାଣୀ ।

ବାଣୀ କହିଲା, ନଯାଇଥିଲେ ଯେ କିଛି ଘଟି ନଥାନ୍ତା ଏକଥା କେମିତି ଭାବୁଛୁ ? ସେ'ସବୁ ତ ନିଜର ଗତିରେ ଆପଣାଛାଏଁ ଘଟି ଚାଲେରେ ! ସେତେବେଳେ ଆଉ ତାକୁ ଲଗାମ ବାନ୍ଧି ରଥାଶ୍ୱ ପରି ଚଳେଇ ହୁଏ ନାହିଁ । ନଦୀ ସ୍ରୋତଠାରୁ ତା'ର ପ୍ରବାହ ତ ଆହୁରି ବେଶୀ ସ୍ୱାଧୀନ, ଆହୁରି ଅଧିକ ଇଚ୍ଛାଧୀନ ।

ଆବାସୀ ଶାନ୍ତ ଭାବରେ କହିଲା, ହଁ । ତା' ନୁହେଁ ତ ଆଉ କ'ଣ ! କିଛି ସମୟ ଚୁପ୍ ରହି ପୁଣି କହିଲା, ପ୍ରେମ ଲାଗି ତ୍ୟାଗ ଏକାନ୍ତ ପ୍ରୟୋଜନ । କିନ୍ତୁ ମୋ'ପାଇଁ ତ୍ୟାଗର ପ୍ରୟୋଜନ ହେଲା ନାହିଁ କି ଭୋଗର ପ୍ରୟୋଜନ ବି ହେଲା ନାହିଁ । ସବୁକିଛି ମୋ'ପାଇଁ ଅପହଞ୍ଚ ହୋଇ ରହିଗଲା ।

ଜୋର୍‌ରେ ନିଃଶ୍ୱାସ ଛାଡ଼ିଲା ଆବାସୀ ।

ତା'ପରେ ଟିକିଏ ରହିଯାଇ କହିଲା, ପ୍ରେମ ପାଖରେ ପହଞ୍ଚିବାକୁ କ'ଣ ନିର୍ଦ୍ଦିଷ୍ଟ ପଥ ଅଛି, ବାଣୀ ?

ବାଣୀ କହିଲା, ମୁଁ ଜାଣେ ନାହିଁ । ତେବେ ବୋଧହୁଏ ନାହିଁ ।

ଆବାସୀ କହିଲା, ଖାଲିକୋଟ କଲେଜରେ ପ୍ରଥମେ ପରିଚୟ ହେଲା ମନୋରମ ସହିତ । ଏକା ସବ୍‌ଜେକ୍ଟ ଥିବାରୁ ପରିଚୟ ପରେ ଅନ୍ତରଙ୍ଗ ହେବାକୁ ବିଳମ୍ବ ହୋଇ ନଥିଲା । ମୁଁ ତତେ ତା'କଥା କହିଥିଲି । ମନେ ଅଛି ?

ମୁଣ୍ଡ ହଲେଇ ବାଣୀ କହିଲା, ହଁ । ମନେଅଛି । କହିଥିଲୁ, ଦି'ତିନିଥର ଚିଠିରେ ମଧ ଲେଖିଥିଲୁ । ସେ ପରେ ବାଣୀବିହାରରେ ପି.ଜି. କଲେନା ?

ହଁ । ମନୋରମ ସବୁ ଦୃଷ୍ଟିରୁ ଭଲ ଥିଲା । ଖୁବ୍ ଭଲ ପଢୁଥିଲା ।

ତା'ର ସରଳ ଭଦ୍ର ବ୍ୟବହାର ପାଇଁ ସେ ସମସ୍ତଙ୍କର ପ୍ରିୟ ଥିଲା ।

ହସିଲା ବାଣୀ । ତୁ' ବି ତ କିଛି କମ୍ ନଥିଲୁ !

ଆବାସୀ ମଧ୍ୟ ହସିଲା । କହିଲା, ତୁ' ତାକୁ ଦେଖିନାହୁଁ ବୋଲି ଏକଥା କହୁଛୁ । ତାକୁ ଆଉ ମୁଁ ପାରିଲି କୋଉଠି !

ସଙ୍ଗେସଙ୍ଗେ ବାଣୀ କହିଲା, ସେ' କ'ଣ ଆମ୍ବ ନା ପିଜୁଳି ଯେ ତୁ' ତାକୁ ପାରିବୁ ? ସେ ତ ସେ' ! ତୁ' ତ ତୁ' !

ଆମ୍ବ ପିଜୁଳି ତ ତୁଚ୍ଛ ଜିନିଷଲୋ ବାଣୀ । ଯୁଗ ଥିଲା, ଯେଉଁ ଯୁଗରେ ଚାନ୍ଦ ତାରା ଅପ୍ରାପ୍ୟ ଥିଲା । କିନ୍ତୁ ଏ ଯୁଗରେ ତାକୁ ପାଇବା ବି ତ ସହଜ ହୋଇଗଲାଣି । ସେ କିନ୍ତୁ ଚନ୍ଦ୍ର ତାରାଠାରୁ ବି ଦୂରରେ । ସୁନ୍ଦର ଓ ମନୋରମ । ସେ' ଦୁର୍ଲଭ । ସତରେ ଦୁର୍ଲଭ । ମୁଁ ତା'କଥା ଯେତେଯେତେ ଭାବେ ଭାବନା ସେତିକି ଗୁଡ଼େଇ ତୁଡ଼େଇ ହୋଇଯାଏ । ଖିଅ ହଜିଯାଏ ।

ହଁ ! ଖଲିକୋଟ କଲେଜରେ ଚାହୁଁ ଚାହୁଁ ଦୁଇବର୍ଷ ଚାଲିଗଲା ।

ପାଠ ଖାଲି ପାଠ । ନୋଟ୍ । ପ୍ରାକ୍ଟିକାଲ୍ । ପରିଶ୍ରମ ନକଲେ, ଭଲ ନ ପଢ଼ିଲେ, ଜୀବନରେ ଉନ୍ନତି ଅସମ୍ଭବ । ଏଇଟା ହିଁ ଆମର ମୂଳମନ୍ତ୍ର ଥିଲା । ଆଉ ସେହି ଦିନଗୁଡ଼ିକରେ ପାଠଚିନ୍ତା ବ୍ୟତୀତ ଅନ୍ୟ କିଛି ହେଲେ ମୋ ମୁଣ୍ଡରେ ପଶୁ ନଥିଲା । ତୋ'ରି ବାପାଙ୍କ କଥାକୁ ଗୁରୁଜ୍ଞାନ କରିଥିଲି । 'ପରିଶ୍ରମ କର । ଭଲ ପାଠପଢ଼ । ମଣିଷ ହଅ ! ତା'ପରେ ଆଉ ଯାହା !'

ମଉସା ସବୁବେଳେ ଏ କଥାଟା ଆମମାନଙ୍କୁ କହୁଥିଲେ । ତୋର ମନେ ଥିବ । ତେଣୁ ପାଠ ଚିନ୍ତା ବ୍ୟତୀତ ମୋ ମୁଣ୍ଡରେ ବି କିଛି ଆଉ ନଥିଲା ।

ବି.ଏ. ପରୀକ୍ଷା କମ୍ ଦିନ ଥାଏ । ମତେ ହାଡ଼ଫୁଟି ହେଲା । ତା'ର ତିନି ଚାରିଦିନ ପରେ ମନୋରମକୁ ବି ହେଲା । ଖାଲି ଯେ ଆମ ଦି'ଜଣଙ୍କୁ ହେଲା ତା'ନୁହେଁ । ବହୁତ ପିଲାଙ୍କୁ ହାଡ଼ଫୁଟି ହୋଇଗଲା । ସେ ବର୍ଷ ଗଞ୍ଜାମ, ଖଲିକୋଟ, ବରହମ୍ପୁରରେ ହାଡ଼ଫୁଟି କାହାରିକୁ ବାଦ୍ ଦେଲା ନାହିଁ ।

ପରୀକ୍ଷାରେ ଭଲ ହେବ ନାହିଁ ବୋଲି ମୁଁ ଅତି ଚିନ୍ତିତ ହୋଇପଡ଼ିଲି । ପରୀକ୍ଷା ପୂର୍ବରୁ ଯେତେବେଳେ ଡିପାର୍ଟମେଣ୍ଟକୁ ଗଲି, ପରୀକ୍ଷାରେ କ'ଣ ହେବ କହି ମୁଁ ଭୟ କଲି । ଭାରି ଭୟ ଲାଗୁଥାଏ । ମନୋରମ କିନ୍ତୁ ନିର୍ବିକାର । ସ୍ଥିର । ତା'ର ଏଇ ଗୁଣଟି

ମତେ ସବୁଠାରୁ ବେଶୀ ଭଲ ଲାଗେ । ଯେ କୌଣସି ଅବସ୍ଥାରେ ଧୀରସ୍ଥିର ହୋଇ ମିଠା କଥା ସେ'କହିପାରେ । ହସିପାରେ । ଶାନ୍ତ-ଶୀତଳ ସ୍ୱାସ୍ଥ୍ୟ ନେଇ ସେ ଯେମିତି ଜନ୍ମ ହୋଇଥିଲା । କୌଣସି କାମ କୌଣସି ପରସ୍ଥିତିରେ ତା'ପାଖରେ କଷ୍ଟକର ହେଉ ନଥିଲା । ସେ ମତେ ଅଭୟ ଦେଲା ।

କହିଲା, ଆଦୌ ଭୟକରନାହିଁ । ନିଜେ ଡରିଲେ ନିଜର କ୍ଷତି । ଦେଖିବ ତମର ଭଲ ହେବ । ନିଶ୍ଚୟ ଭଲ ହେବ, ତମେ ନର୍ଭସ୍ ହୁଅ ନାହିଁ ।

ପରୀକ୍ଷା ପରେ ଯିଏ ଯାହା ଘରକୁ ଚାଲିଗଲେ ।

ଯଥା ସମୟରେ ପରୀକ୍ଷା ଫଳ ବାହାରିଲା ।

ମନୋରମ ଫାଷ୍ଟ କ୍ଲାସ-ସେକେଣ୍ଡ ହେଲା । ଆଉ ମୁଁ..... ଫାଷ୍ଟକ୍ଲାସ୍ ପାଇଲି । ସେ ବାଣୀବିହାରରେ ପି.ଜି. କଲା ।

ଆମ ଘର ଅବସ୍ଥା କଥା ତୁ' ଜାଣୁ । ତେଣୁ ମୁଁ ଚାକିରି କଲି । ସେ ଏମ୍.ଏ. ପାଶ୍ କରିବା ଖବର ମୁଁ ପାଇଲି । ତା'ପରେ ଅନ୍ୟ ସମସ୍ତଙ୍କ ଖବର ପରି ତା' ଖବର ମୋ' ଭିତରୁ ଧୀରେ ଧୀରେ ହଜିଗଲା । ସେ ଭଲ ପିଲା ଥିବାରୁ, ଭଲ ପଢୁଥିବାରୁ, ପଢିଲାବେଳେ ସେ ମତେ ଭଲ ଲାଗିଥିଲା । ତା'ପରେ ଅନ୍ୟ ସମସ୍ତଙ୍କ ପରି ସେ ତା' ବାଟରେ ଚାଲିଗଲା । ମୁଁ ମଧ୍ୟ ମୋ ବାଟରେ ଚାଲିଲି । ମୁଁ ମନୋରମ କଥା ଭାବି ନାହିଁ ।

ସାନ ଭଉଣୀ ଆଶା ପାଇଁ ପାତ୍ର ଦେଖି, ତାକୁ ବିବାହ ଦେବା ଚିନ୍ତା ମୋ ମନକୁ ଭାରୀ କରୁଥିଲା । ସେଇ ସମୟ ଭିତରେ, ମୁଁ ଯେତେବେଳେ ଅତିଶୟ ବ୍ୟସ୍ତ, ବିବ୍ରତ ଥିଲି, ସେହି ସମୟରେ ତୋ'ବାହାଘର ସରିଗଲା । ମଉସାଙ୍କ ଚେଷ୍ଟା ଓ ସାହାଯ୍ୟ ସହଯୋଗରୁ ଆଶାର ବାହାଘରଟା ସୁରୁଖୁରୁରେ ଶେଷ ହେଲା । ସାନଭାଇ ନାରୁ ମାଟ୍ରିକ୍ ପାଶ୍ କଲା । ତାକୁ କଟକ ଇଂଜିନିୟରିଂ ସ୍କୁଲ୍‌ରେ ଭର୍ତ୍ତି କରିଦେଲି । ଚାକିରି ଭିତରେ ବି.ଇଡ୍.ଟ୍ରେନିଂଟା ମଧ୍ୟ ସରିଗଲା । ଓଡ଼ିଶାରେ ଘରୋଇ ଭାବରେ ଏମ୍.ଏ. ପରୀକ୍ଷାଟା ମଧ୍ୟ ଦେଲି ।

ଏହିସବୁ ସେହି ପାଞ୍ଚ-ଛଅ ବର୍ଷ ଭିତରେ ଘଟିଥିବା କଥା । ସେତେବେଳେ ସମୟ ପାଣି ପରି ହିଁ ବହିଯାଉଥିଲା । ଆଦୌ ଫୁରୁସତ ନଥିଲା । କେମିତି ଗୋଟାଏ କଠୋର ପରିଶ୍ରମ ଭିତରେ ଅଣନିଃଶ୍ୱାସିଆ ଭାବ ନେଇ ମୁଁ ଯେମିତି ଧାଇଁଥିଲି ।

ତା'ପରେ ଧୀରେ ଧୀରେ ସ୍ଥିର ହୋଇଗଲି ।

କେଉଁଝରର ହରିଚନ୍ଦନପୁର ସ୍କୁଲରେ ମୁଁ ଥାଏ । ଯିବା ଆସିବା ପାଇଁ ଅସୁବିଧା ସିନା, କିନ୍ତୁ ଭାରି ସୁନ୍ଦର ଜାଗା । ଆନୁଏଲ-ଫଙ୍କସନ୍ ପାଇଁ ଜୋର୍‌ସୋର କାମ ଲାଗିଥାଏ । ପିଲାମାନଙ୍କ ପ୍ରାଇଜ୍ ଜିନିଷ କିଣିବା ସହିତ ଅନ୍ୟ କେତେକ କାମରେ ହେଡ୍ ମିସ୍‌ଟ୍ରେସ୍ ମତେ କେଉଁଝର-ଗଡ଼କୁ ପଠାଇଥିଲେ । ଯେକୌଣସି ଜିନିଷପତ୍ର କିଣାକିଣି ଲାଗି ଚାକିରିଆମାନେ ସମସ୍ତେ ପ୍ରାୟ କେଉଁଝର ଗଡ଼କୁ ହିଁ ଯାଇଥାନ୍ତି ।

କହିଛି ତ, ହରିଚ୍ନଦନପୁରକୁ ଯିବା ଆସିବା ବାଟ ଭାରି ଅବାଗ । ଅସୁବିଧା । ଗୋଟିଏ ବସ୍ ଭୋର୍ ସକାଳୁ ସେଠାରୁ କେଉଁଝର ଗଡ଼କୁ ଯାଏ ଓ ସେଇ ବସ୍ କେଉଁଝର ଗଡ଼ରୁ ଉପରଓଳି ପୁଣି ଫେରିଆସେ । ଯାହା କିଛି କିଣିବା କଥା ସେହି ସମୟ ଭିତରେ ହିଁ କିଣିବାକୁ ହେବ । ନଚେତ୍ ରାତିରେ ରହିବାକୁ ହେବ । ଯାହା କିଣିବ ସେହି କେଉଁଝର ଗଡ଼ରୁ କିଣିବ । ସେଇଟା ହିଁ ସହର ।

ଆଜି ଯାଇ କାଲି ଉପରଓଳି ଫେରିବାର ସ୍ଥିର ହେଲା ।

ସବୁ କାମ ଠିକ୍ ଠିକ୍ ହୋଇଗଲା । ତାଲିକା ମୁତାବକ ସବୁ ଜିନିଷ କିଣାକିଣି କରିସାରି ହିସାବ ମିଳେଇ ଦେଖିଲି । ହେଡ୍ ମିସ୍‌ଟ୍ରେସ୍‌ଙ୍କ ନିର୍ଦ୍ଦେଶାନୁସାୟୀ ସବୁ କାମ ଶେଷ କରି ପରଦିନ ଉପରଓଳି ଫେରିଲି ।

ସେଦିନ ବସ୍‌ଟା କ'ଣ ଟିକେ ଖରାପ ଥିଲା । ମେକାନିକ୍ ଆସି ହାତ ମାରିଦେଇ ଗଲା । ବୁଢ଼ା ଡ୍ରାଇଭର ଧଡଡ଼ା ବସ୍‌ରେ ଷ୍ଟାର୍ଟ ଦେଇ ଚଳେଇବା ଆରମ୍ଭ କଲା । 'ଜୟମା ତାରିଣୀ' ନାଦରେ ବସ୍ ଛାତ ଉଡ଼ିଯିବ ଯେମିତି । ମୁଁ ମନେ ମନେ ମା'ଙ୍କୁ ସ୍ମରଣ କଲି !

ନିର୍ଦ୍ଦିଷ୍ଟ ସମୟର ଦୁଇଘଣ୍ଟା ବିଳମ୍ବରେ ବସ୍ ଛାଡ଼ିଲା । ପୁଣି ଖରାପ ଥିବାରୁ ଆସ୍ତେଆସ୍ତେ ଚାଲୁଥାଏ । ଲୋକମାନେ ପାଟିକରି ହସାହସି ହେଉଥାନ୍ତି । ରଡ଼ି କରୁଥାନ୍ତି । ହୋ ଡ୍ରାଇଭରବାବୁ, ଏଇଟା ବସ୍‌ନା ପିମ୍ପୁଡ଼ିଟେ ଚାଲୁଛି ହେ !

ଏତେ ସତ୍ତ୍ୱେ ମଝି ବାଟରେ ବିଦ୍ରୋହ ଘୋଷଣା କରି ବସ୍ ଟା ପୁଣି ସଦର୍ପରେ ଠିଆ ହୋଇଗଲା ।

ସେଇ ଯେ ଠିଆ ହେଲା ଆଉ କୌଣସି ମତେ ସେ ଚଳିବାକୁ ନାରାଜ ।

ଡ୍ରାଇଭର, କଣ୍ଡକ୍ଟର, କ୍ଲିନର କ'ଣ ସବୁ ତଦାରଖ କରି ଚୁପ୍ ରହିଲେ । କ୍ଲିନର ପିଲାଟା ବସ୍ ତଳେ ମୁଣ୍ଡପଟେ ପଶି କ'ଣ ଦେଖାଦେଖି କରି ପେଟତଳ ବାଟେ ବାହାରି ଆସିଲା । ମୁଣ୍ଡ ହଲେଇ ନାସ୍ତିସୂଚକ ସୂଚନା ଦେଲା ।

ଲୋକଙ୍କର ପାଟିତୁଣ୍ଡ, ହୋ-ହୋ, ଘୋ-ଘୋ କିଛି ସମୟ ପରେ ବନ୍ଦ ହୋଇଗଲା । କ'ଣ ହେବ, କ'ଣ କରିବେ ବୋଲି ସମସ୍ତେ ଚିନ୍ତା କଲେ । କେଉଁଆଡୁ କେତେବେଳେ ବସ୍ ବା ଟ୍ରକଟାଏ ଆସିବ ଚାହିଁ ରହିଲେ ସମସ୍ତେ ।

କିଛି ସମୟ ପରେ କେଉଁଝରର ଗଡ଼ଆଡୁ ଟ୍ରକ୍‌ଟାଏ ଆସିଲା । ଯିବ ଝୁମ୍ପୁରା । ଟ୍ରକ ଡାଲାରେ ବସ୍ତା ଭର୍ତ୍ତି । ତଥାପି କିଛି ଲୋକ ଚଢ଼ିଗଲେ ।

ରାସ୍ତାକଡ଼ ଗଛମୂଳ ପଥର ଉପରେ ବସି ମୁଁ ଭାବୁଥାଏ, କ'ଣ କରିବି ! କେଉଁଝରର ଗଡ଼ ଅଭିମୁଖୀ ବସ୍ ବା ଜିପ୍ ଆସିଲେ ସହରକୁ ଫେରିଯିବା ହିଁ ମୋ ପକ୍ଷରେ ମଙ୍ଗଳକର ହେବ । ଏହି ସମୟରେ ହରିଚନ୍ଦନପୁରକୁ କୌଣସି ଗାଡ଼ି ମିଳିବା ଅସମ୍ଭବ କଥା, କେବଳ ବ୍ଲକ୍ ଜିପ୍ ବ୍ୟତୀତ ।

ଘଣ୍ଟାଏ ବିତିଗଲା । ସେତେବେଳେ ସେହି ସମୟତକ ଖୁବ୍ ଦୀର୍ଘ ଓ ଅସରନ୍ତି ମନେ ହେଉଥାଏ । ଏତେ ବିରକ୍ତ ଲାଗୁଥାଏ ଯେ କ'ଣ କହିବି ! ଯିଏ ସେ ଅବସ୍ଥା ଭୋଗିଛି ସିଏ ହିଁ ଜାଣିପାରିବ । ଆକାଶକୁ ଅନେଇ ବସି ବସି ଅବାନ୍ତର ଭାବନା ବ୍ୟତୀତ ଅନ୍ୟ ପଥ ନାହିଁ ।

ଛାପିଛାପିକା ଜହ୍ନ ଆଲୁଅକୁ ଘୋଡ଼େଇ ପକେଇ ଉଜ୍ଜ୍ୱଳ ଆଲୋକ ପହଁରି ଆସିଲା । ଲୋକେ ଚଞ୍ଚଳ ହୋଇ ଉଠିଲେ । ପରେ ଥମିଗଲେ ।

ଜିପ୍‌ଟାଏ ! ତାହା ବି ଅଟକିଲା ନାହିଁ । ଆଗେଇଗଲା । କିଛି ବାଟ ଯିବା ପରେ ପୁଣି ପଛୁଆ ଫେରିଲା ଓ ମୋ'ପାଖରେ ଅଟକି ଗଲା ।

ସୁଟ୍ ପରିହିତ ଜଣେ ସୁଦର୍ଶନ ଯୁବକ ଜିପରୁ ଓହ୍ଲେଇ ଆସି ମୋ'ସାମ୍ନାରେ ଠିଆ ହୋଇଗଲେ ।

ତିନି ଚାରି ଜଣ ବସ୍ ଯାତ୍ରୀ ଆଗେଇ ଆସୁଥିଲେ । କିନ୍ତୁ ଫେରିଗଲେ । ଲୋକଙ୍କ ଭିତରେ ଯେମିତି ଚାଞ୍ଚଲ୍ୟ ଖେଳିଗଲା ।

ଜିପ୍ ଲାଇଟ୍‌ରେ ରାସ୍ତା ଓ ରାସ୍ତାକଡ଼ ଉଜ୍ଜ୍ୱଳ ଦିଶୁଥାଏ । ମୁଁ ଠିଆ ହୋଇପଡ଼ି ଆଗନ୍ତୁକଙ୍କ ମୁହଁକୁ ଚାହିଁଲି । ଖୁସିରେ ଏକପ୍ରକାର ଚିତ୍କାର କରିଉଠିଲି । ପାଟିକରି କହି ପକେଇଲି,

..... ଆରେ .... ତମେ....

ମନୋରମ ହସିଲା । କହିଲା, ହେଡ୍‌ଲାଇଟ୍‌ଟା ପାଶ୍‌କରି ଗଲା ବେଳେ ତମକୁ ଠିକ୍ ଦେଖିପାରିଲି ନାହିଁ । କିନ୍ତୁ ତମେ ବୋଲି ସନ୍ଦେହରେ ପଡ଼ି ଫେରିଲି । କିନ୍ତୁ ତମେ....? ତମେ ଏଠି କେମିତି ? କେଉଁଠିକି ଯିବ ?

ଖୁବ୍ ସଂକ୍ଷେପରେ କେଉଁଝର ଗଡ଼ରୁ କାମ ଶେଷକରି ଫେରୁଥିବା କଥା କହିଲି । ଆମ ଚାରିପାଖରେ ବେଶ୍ କିଛି ଲୋକ ଜମି ଯାଇଥିଲେ । ଅସଂଖ୍ୟ କୌତୂହଳ ଦୃଷ୍ଟି ଆମ ଉପରେ ବୁଲିଯାଉଥାଏ ।

ମନୋରମ ସଙ୍ଗେ ସଙ୍ଗେ ସଚେତନ ହୋଇଗଲା । ମତେ କହିଲା, ମୋ' ସହିତ ଚାଲ । ଆଜି ଖୁବ୍ ଶୁଭଦିନଟିଏ ଆବାସୀ ! କାଇଁ ତମ ଜିନିଷ କାଇଁ ?

ମନୋରମ ତା' ଅର୍ଦ୍ଦଳିକୁ ଡ଼ାକି ମୋ' ଜିନିଷତକ ବସ୍‌ରୁ ନେଇ ଜିପ୍‌ରେ ଥୋଇବାକୁ କହିଲା । ତା'ପରେ ଲୋକଙ୍କୁ ଚାହିଁ କହିଲା, ସମୟ ତ ହୋଇଗଲାଣି । ଲାଗ୍ ଲାଗ୍ ଦୁଇଟା ବସ୍ ଆସିଯିବ । ଆପଣମାନଙ୍କର ଆଉ ଅସୁବିଧା ହେବ ନାହିଁ । ହରିଚ଼ନ୍ଦନପୁର ଲୋକେ ଅନ୍ତତଃ ଘଟଗାଁ ପର୍ଯ୍ୟନ୍ତ ଚାଲିଯାଇ ପାରିବେ ।

ନିଜେ ଚାଳକ ସିଟ୍‌ରେ ବସି ମତେ ବସିବାକୁ କହିଲା । ତା'ପରେ ଫୁଲସ୍ପିଡ୍‌ରେ ଜିପ୍ ଛାଡ଼ିଦେଲା ।

ଗୋଟାଏ ବିରାଟ ଦୁଶ୍ଚିନ୍ତାରୁ ଖାଲି ଯେ ମୁକ୍ତି ପାଇଲି ତା'ନୁହେଁ, ମନୋରମ ସହିତ ଦେଖା ହୋଇଯିବାଟା ମତେ ଯେମିତି ଅନେକ ସ୍ୱସ୍ତି ଭାବ ଆଣି ଦେଉଥିଲା । ଭାରି ଆନନ୍ଦ ଲାଗୁଥିଲା । ଅନେକ କଥା ପଚାରିବାକୁ ଇଚ୍ଛା ହେଉଥିଲା, ହେଲେ ତା'ର ଗମ୍ଭୀର ମୁହଁକୁ ଚାହିଁ ମୁଁ ଚୁପ୍ ରହିଲି ।

ବେଶ୍ କିଛି ବାଟ ଯିବା ପରେ ମୁଁ ପଚାରିଲି, ଏ ଯାତ୍ରା କେଉଁଠିକି ?

ନିଶ୍ଚୟ ମହାଯାତ୍ରା ନୁହେଁ । ନିର୍ଭୟ ରୁହ ।

କଣେଇଁ ଚାହିଁଲା ସେ । ମୁରୁକି ହସିଲା ।

କେବେଠାରୁ ତମେ ଏଠାରେ ? ପଚାରିଲି ।

ସେ ସାମ୍ନାକୁ ଚାହିଁ, ଷ୍ଟିଅରିଂ ବୁଲଉ ବୁଲଉ କହିଲା, ସବୁକଥା ଥାଉ । ବାଟରେ ସରିଗଲେ ସେଠି ପହଞ୍ଚି ପୁଣି କ'ଣ କରିବା !! ସେ ହସୁଥାଏ ।

ମୁଁ ବୁଝିଲି, ସେ କିଛି ଗୋଟାଏ ଅଫିସର୍ । ଜିପ୍ ପଛରେ ତା' ଡ୍ରାଇଭର, ଅଦର୍ଲି ବସିଛନ୍ତି । ଏଠି କଥାବାର୍ତ୍ତା କରିବା ସତରେ ଅସଙ୍ଗତ ।

ଖୁବ୍ ଜୋର୍‌ରେ ଜିପ୍ ଦୌଡୁଥାଏ ।

ମନୋରମ ଦେଖିବାକୁ ସୁନ୍ଦର । ଏବେ ତା' ମୁହଁରେ ମାଂସ ଲାଗିଯାଇଛି । ଗାଲ ପୂରିଲା ପୂରିଲା ହୋଇଯାଇଛି । ଏଇ ସାହେବୀ ପୋଷାକରେ ସେ ଖୁବ୍ ସ୍ମାର୍ଟ ଦିଶୁଛି । ବେଶ୍ ଲାଗୁଛି । ସମ୍ମୁଖ ରାସ୍ତାରେ ସ୍ଥିର ଦୃଷ୍ଟି ରଖି ସେ ଜିପ୍ ଚଳେଇନେଉଛି ।

ନଦୀରୁ ଶାଖା ନଦୀଟିଏ ସୃଷ୍ଟି ହେଲା ପରି ଓସାରିଆ ପିଚୁରାସ୍ତାରୁ ଅଣଓସାରିଆ କଚାରାସ୍ତାଟିଏ ବାହାରି, ଲମ୍ବିଯାଇଛି ଘଞ୍ଚଜଙ୍ଗଲର ଗାଢ଼ ସବୁଜିମା ଭିତରକୁ । ସହରିଆ ଅଞ୍ଚଳରେ ସଞ୍ଜ ହେବାର ଯଥେଷ୍ଟ ପୂର୍ବରୁ ସେ ଅଞ୍ଚଳକୁ ସଞ୍ଜର ଅନ୍ଧକାର ମାଡ଼ିଆସେ । ତାର ଚାରିପାଖରେ ଆକାଶକୁ ଅନେଇଥିବା ଢ଼େଉ ଢ଼େଉକା ପାହାଡ଼ମାଳ । ସହରର କୃତ୍ରିମତା, ପ୍ରତିଯୋଗିତା, ଅଣନିଃଶ୍ୱାସିଆ ଦୌଡ଼ ଦୁଃଖ ଯନ୍ତ୍ରଣାକୁ ଭୁଲି ଯାଉଥିବାର ଛଳନା କରୁଥିବାର ଉତ୍କଟ କୋଳାହଳ, ଏସବୁ ସେଠାରେ ସାତସ୍ୱପ୍ନ ।

କଚା ରାସ୍ତାରେ ବେଶ୍ କିଛି ବାଟ ଯିବା ପରେ ମନୋରମ କହିଲା, ମୁଁ ଡାକବଙ୍ଗଳାରେ ଅଛି । ଭାରି ସୁନ୍ଦର ଜାଗା । ତମକୁ ନିଶ୍ଚୟ ଭଲ ଲାଗିବ ଆବାସୀ । ଆମ ରାଜ୍ୟର ପ୍ରାକୃତିକ ସୌନ୍ଦର୍ଯ୍ୟ ସତରେ ଅତୁଳନୀୟ । ଦେଖିଲେ ମନେ ହୁଏ, ଅଜଣା କଳାକାର ତା'ର ଅଦୃଶ୍ୟ ତୁଳୀରେ ଆଙ୍କିଦେଇ ଯାଇଛି ସେଇ ସବୁ ନିଃସର୍ଗ ସୌନ୍ଦର୍ଯ୍ୟ ।

ଆଜିକାଲି କବିତା ଲେଖିଲଣି କି ? - ମୁଁ ହସ ଚାପି ପଚାରିଲି ।

ଲେଖିବାକୁ କ'ଣ ମନା ? କବିତାଟା କଣ ଖାଲି ତମରିମାନଙ୍କର ଏକଚାଟିଆ ?

ମନୋରମ କଥା କହୁଥାଏ । ସାମ୍ନାକୁ ଚାହିଁଥାଏ । ତା'ର ସବଳ ହାତ ଦୁଇଟିରେ ପାପୁଲି ଷ୍ଟିଅରିଂକୁ ଶକ୍ତ କରି ମୁଠେଇ ଧରିଥାଏ । ସେହି ମୁଠେଇ ଧରିଥିବା, ସେହି ଷ୍ଟିଅରିଂ ଧରି ଚଳେଇବାର ଭଙ୍ଗୀ ହିଁ ନିଆରା । ଜଙ୍ଗଲର ଛାତି ଚିରି ଶୁଖିଲା ପତ୍ର ସବୁ ରାସ୍ତାରୁ ଉଡ଼େଇ ଦେଇ ନାଲି ରାସ୍ତାରେ ଜିପ୍‌ଟା ପହଁରି ଯାଉଥାଏ । ମୋ' ବାଁ କଡ଼ରେ ଅନବରତ ଧାଇଁ ଯାଉଥିବା ଗଛବୃଛଗୁଡ଼ିକୁ ଚାହିଁରହି କହିଲି, ଏକଥା କହିବାକୁ କାହା ଭିତରେ ହାଡ଼ ଅଛି ? ବରଂ କହିବାକୁ ଗଲେ କାବ୍ୟ-କବିତାର ଜଗତଟା ତ ସମ୍ପୂର୍ଣ୍ଣ ଭାବରେ ତମରି ମାନଙ୍କର । ତମରିମାନଙ୍କ ଖାସ୍ ମାହାଲ୍ ସମଭି ସେ ସବୁ ।

ମୃଦୁ ଭାବେ ହସି ଉଠିଲା ମନୋରମ ।

ବାଃ ! ବେଶ୍ ତ !

ଆଉ କ'ଣ କହିବାକୁ ଯାଇ ସେ ଚୁପ୍ ରହିଲା । କିଛି ଗୋଟାଏ କହିବାକୁ ହେବ, ସେଇଥିପାଇଁ ହିଁ ଯେମିତି କଥା କହିବା କଥା, ସେମିତି ସେ କହିଲା, ଆଉ ଅଳ୍ପ ବାଟ ରହିଲା । ବିରକ୍ତ ଲାଗୁ ନାହିଁ ତ !

ମୁଁ ତା' ମୁହଁକୁ ଚାହିଁ ହସିଦେଇ ଚୁପ୍ ରହିଲି ।

କେଉଁଝରର ଜଙ୍ଗଲ ଭିତରେ ସେହି ଡାକ ବଙ୍ଗଳାଟି !

ଆଃ ! କି ସୁନ୍ଦର !

ଏବେ ବି ମୋ' ମନ ଭିତରେ ସିନେରୀଟିଏ ପରି ରହିଛି । ତା'ର ଉପମା ନାହିଁ । ତୁଳନା ବି ହୋଇ ପାରେନା । ନ ଦେଖିଲେ କେହି କେବେ ହେଲେ ଅନୁମାନ କରି ପାରିବ ନାହିଁ ଲୋ ବାଣୀ ! ସତେ ଯେମିତି ସେଇ ଲୋକାଳୟଟି କୋଳାହଳଠାରୁ ବହୁ ଦୂରରେ, ନିର୍ଜନ ଶାଗୁଆ ଉପତ୍ୟକା ମଝିରେ ଥାଇ ନିଶ୍ଚିନ୍ତରେ ଗାଢ଼ ନିଦରେ ଶୋଇ ପଡ଼ିଛି ।

ଡାକବଙ୍ଗଳାର ବାରଣ୍ଡାରେ ଠିଆହୋଇ ଚରିଆଡ଼କୁ ଚାହିଁ ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

କହିଲି, ନିବିଡ଼ ଜଙ୍ଗଲ ଭିତରେ ଏମିତି ଡାକ ବଙ୍ଗଳା ! ଆଶ୍ଚର୍ଯ୍ୟ ! ଦିନ ଦି'ପହରରେ ତ ବାଘ ଆତଯାତ ହେଉଥିବ ! ବାବାରେ ! କି ନିକାଞ୍ଛନିଆ ସ୍ଥାନ !

ପ୍ୟାଣ୍ଟ୍ ପକେଟ୍‌ରେ ହାତ ପୂରେଇ ଅଫିସର୍ସ ଠାଣିରେ ଠିଆହୋଇଥିଲା ମନୋରମ । କହିଲା, ଆଗେ ବାଘ ଆସୁଥିଲା । ଏବେ ସେ ଭୟ ଆଉ ନାହିଁ । ତେବେ ଏ ସ୍ଥାନଟା ସବୁବେଳେ ନିଶ୍ଚିନ୍ତ ନୀରବତା ଭିତରେ ମହାଯୋଗୀ ପରି ଧ୍ୟାନସ୍ଥ, ସମାଧିସ୍ଥ ଅବସ୍ଥାରେ ଥାଏ । ତମ କବି ଭାଷାରେ ଗାଢ଼ ନିଦରେ ଶୋଇଥାଏ । କାଁ ଭାଁ କେଉଁ ବାବୁଭାୟା ଅଫିସର ଦଳ ଆସିଲେ ସେ ବାଧ ହୋଇ ଟିକେ ଚେଇଁ ଉଠି ପୁଣି ଶୋଇପଡ଼େ । କାରଣ ଯେଉଁମାନେ ଆସିଆନ୍ତି ସାଧାରଣତଃ ସେମାନେ ସନ୍ଧ୍ୟା ପୂର୍ବରୁ ଫେରିଯାଆନ୍ତି ।

କିନ୍ତୁ ଏମିତି ଜାଗାରେ କିଏ ଡ଼ାକ ବଙ୍ଗଳା କଲା ? ଏଇଟା ତ ପୁରୁଣାକାଳିଆ ଘର ପରି ଜଣାଯାଉଛି । ଯେମିତି କି କେଉଁ ରାଜାରାଜୁଡ଼ାଙ୍କ ଉଦ୍ୟାନ-ଉଆସ ।

ସତରେ ଲୋ ବାଣୀ, କେମିତି ଅନ୍ୟ ପ୍ରକାର ତିଆରି ସେ ଘରଗୁଡ଼ାକ, ସବୁଠାରେ ଗୋଟିଏ ରାଜକୀୟ ଠାଣି ଲେସି ହୋଇ ରହିଛି । ଲୁହା ଗୋବ ବସା ବିରାଟ ବିରାଟ କବାଟ । ଝରକା ପ୍ରଶସ୍ତ, ଲମ୍ବା ବାରଣ୍ଡା । ଏପରି ସୁନ୍ଦର ମଜବୁତ୍ ଗଢ଼ଣର ଡ଼ାକ ବଙ୍ଗଳା ମୁଁ କେବେ ଦେଖି ନଥିଲି ।

ମନୋରମ ଶାନ୍ତ ସ୍ୱରରେ କହିଲା, କେନ୍ଦୁଝର ରାଜାସାହେବଙ୍କର ଅନେକ ଗୁଡାଏ ଗ୍ରୀଷ୍ମନିବାସ ମଧ୍ୟରୁ ଏଇଟା ବି ଗୋଟିଏ ।

କହିଲି, ହଁ, ତା'ନହେଲେ ଏମିତି ଖିଆଲି ଭାବ ଆଉ ବା କାହାର ହେବ ? ଏମିତି ଜାଗାରେ ଏପରି ଗୋଟିଏ ବିରାଟ ଘର କରିବ ଅବା କିଏ !

ମନୋରମ କହୁଥିଲା, ବଣଜଙ୍ଗଲ ମଝିରେ, ପାହାଡ଼ ଉପରେ ରାଜା ମହାରାଜାମାନେ ଏମିତି ନିବାସ ସବୁ କରିଯାଇଛନ୍ତି । ଇଏ କ'ଣ- । ଯା'ଠାରୁ ତ ସହସ୍ର ଗୁଣ ସୁନ୍ଦର ବଙ୍ଗଳା, ଆହୁରି ଘଞ୍ଚ ନିକାଞ୍ଚନ ଜଙ୍ଗଲ ତ ନୁହେଁ ଅରଣ୍ୟ ଭିତରେ ଅଛି । ଯେଉଁଠିକି ଦିନରେ ଖରା ପଡ଼େ ନାହିଁ - ଏତେ ଘଞ୍ଚ ବୃକ୍ଷରାଜି ରହିଛି ! କି ସୁନ୍ଦର ସ୍ଥାନ ସବୁ ନିର୍ବାଚନ କରି, ଖରାଦିନେ ରହିବେ ବୋଲି ଉଆସ କରିଥିଲେ । ସେମାନେ ତ ନାହାନ୍ତି । ସେ ସବୁ ଏମିତି ଭାବରେ ବ୍ୟବହାର ହେଉଛି ।

ଏଇ ଘରଟା ଭାଙ୍ଗିରୁଜି ଯାଇଥିଲା । ଏଇ କେତେବର୍ଷ ହେବ କଲେକ୍ଟରଙ୍କ ଦୃଷ୍ଟିରେ ଏଇଟା ପଡ଼ିଗଲା । ସେ ଏହାର ସୁରକ୍ଷାର ବ୍ୟବସ୍ଥା କଲେ । ମରାମତି କରେଇଲେ । ଲୋକ ରଖେଇଲେ । ବର୍ତ୍ତମାନ ରହିବା ଯୋଗ୍ୟ ହୋଇ, ଏକ ପ୍ରକାର ଚାଲିଛି ।

ମୁଁ ପଚାରିଲି, ଆସିବା ବାଟରେ ଗାଁ ଗଣ୍ଡା ତ କିଛି ପଡ଼ିଲା ନାହିଁ । ଏଠାରେ କିଛି ଗୋଟାଏ ବିପଦ ଆପଦ ପଡ଼ିଲେ, ବଡ଼ ଅସୁବିଧା ତ !

ତା' ତ ନିଶ୍ଚୟ । ତେବେ ବିପଦଟା ଯେଉଁଠି ଯେତେବେଳେ ଆସିଲେ ବି ସେ ବିପଦ !

ହସିଲା ମନୋରମ । କହିଲା, ତେବେ ଅଳ୍ପ ଦୂରରେ ଆଦିବାସୀ ଗାଁ ଅଛି । ରାଜାଙ୍କ ଶିକାର ବେଳେ ସାହାଯ୍ୟ କରିବା ପାଇଁ ବସ୍ତି ସ୍ଥାପନ କରାଯାଇଥିଲା । ଏକ କିଲୋମିଟର ବା ତା'ଠୁ ଟିକେ କମ୍ ଦୂର ହେବ । ସେହି ଗାଁ ବର୍ତ୍ତମାନ ଶିକାର ଗାଁ ନାମରେ ପରିଚିତ । ସେହିପରି ଆଉ କେତେକ ଆଦିବାସୀ ବସ୍ତି ଓ ଗାଁସବୁ ପାଖକୁ ପାଖ ଲାଗିରହିଛି । ସେହି ଗାଁ ବାସିନ୍ଦା ଆଦିବାସୀମାନଙ୍କ ଉନ୍ନତିକଳ୍ପେ ଆମ ସରକାର ଅନେକ ଯୋଜନା କରିଛନ୍ତି ।

ଆଉ...... ଆମ ଭଳି ଅଧମମାନେ ଏହିଭଳି ଅନୁନ୍ନତ ଅଞ୍ଚଳସବୁର ସେବା କରିବାକୁ, ଉନ୍ନତି କରିବାକୁ ମୁତୟନ ହୋଇଛୁ ।

ମୁଁ ହସିପକେଇଲି ତା' କଥାରେ ।

ଭଣିବା ଅନାବଶ୍ୟକ । ସ୍ୱଚକ୍ଷୁରେ ତ ଦେଖିବାକୁ ପାଉଛୁ । ତେବେ .....ଉତ୍ସୁକ ଦୃଷ୍ଟିରେ ମନୋରମ ମତେ ଚାହିଁଥିଲା । କହିଲି, ତେବେ କେଡ଼େ ନିର୍ଜନ ଏ ସ୍ଥାନ । ଯାହାକୁ କହନ୍ତି ନୀରବିତ ନିର୍ଜନତା, ଠିକ୍ ତାହା ।

ଠିକ୍ ! ..... ଦେହ ଝାଡ଼ି ଛାତି ଫୁଲେଇଲା ମନୋରମ । କହିଲା, ଠିକ୍ କଥା । ମୋ'ପରି ସାହସୀ ବୀର ପୁଙ୍ଗବ ନ ହେଲେ..... ତା' କଥା ହଠାତ୍ ବନ୍ଦ ହୋଇଗଲା । ଡ୍ରାଇଭର ଜିପ୍ ଚାବି ଆଣି ତା'ହାତକୁ ବଢ଼େଇ ଦେଲା । ତଳକୁ ମୁଣ୍ଡ ପୋତି ଠିଆ ହୋଇ, ମୁଣ୍ଡ ପଛପଟକୁ ଆଉଁସିଲା ।

କ'ଣ ? ମନୋରମର ହାକିମାତି ସ୍ୱର ।

ସାହେବ ! ଟିକେ ଘରକୁ ଯିବି ।

ଆଚ୍ଛା ! ମନୋରମ ଅନୁମତି ଦେଇସାରି କହିଲା, କ'ଣ ନାଚ୍‌ଗୀତ ହେଉଛି ପରା ? ଜଗନ୍ ବି କହୁଥିଲା । ଦୁହେଁ ଚାଲିଯିବ । କିନ୍ତୁ ଖୁବ୍ ସକାଳୁ ...

ମନୋରମର କଥା ଶେଷ ହେଲା ନାହିଁ । ଡ୍ରାଇଭର ହାତ ମଳିମଳି କହିଲା, ହଜୁର, ଆମେ ଆସି ପହଞ୍ଚି ଯିବୁ ।

ଯାଅ ।

ଡ୍ରାଇଭର ଓ ଅର୍ଦ୍ଦଳି ଚାଲିଗଲେ ।

ମୁଁ ପଚାରିଲି, ସେ ଦୁହିଁଙ୍କୁ ଯିବାକୁ କହିଦେଲ । ଆଉ କିଏ ଅଛି ?

କାହିଁ, ମୁଁ ଆଉ ତମେ... ମନୋରମ ଡ୍ରାମା କଲା ପରି କହିଲା ଓ ହସିଲା । ତମକୁ କ'ଣ ଡ଼ର ମାଡ଼ୁଛି ଆବାସୀ ?

ନା । ଡର ନୁହେଁ । ତେବେ ଏଇ ଭୂତକୋଠି ପରି ଘରଟାରେ ! ବାବ୍‌ବା !

ମନୋରମ ହସି ଉଠିଲା । ସେ ହସ ଜହ୍ନ ଆଲୁଅରେ ଯେମିତି ଢ଼େଉ ଖେଳେଇ ଦେଲା । ମୁଁ ପଛକୁ ବୁଲି ଚାହିଁଲି ।

ଘର ଖୋଲା ହୋଇଛି । ଭିତରୁ ଆଲୁଅ ଦିଶୁଛି । ବାରଣ୍ଡାରେ ଷ୍ଟୁଲ୍ ଉପରେ ଲଣ୍ଠନ ଜଳୁଛି ।

ସେ କହିଲା, ଏଇଠି ଠିଆ ହୋଇ ଏମିତି ଦେଖୁଥିବ ନା କ'ଣ ? ଆସ ଭିତରକୁ ଯିବା ।

ତା' ପଛେ ପଛେ ମୁଁ ଘର ଭିତରକୁ ଗଲି । ଖୁବ୍ ବଡ଼ କୋଠରି । ଶିଶୁ କାଠର ଦୁଇଟା ବଡ଼ ପ୍ୟାଟନ୍‌ର ଖଟରେ ଡନ୍‌ଲପ୍ ଗଦି । ତା'ଉପରେ ସଫେଦ ଧଳା ଚାଦର ଟାଣି ହୋଇପଡ଼ିଛି । କେଉଁଠି ଟିକିଏ ମଧ ଭାଙ୍ଗ ନାହିଁ । ଧଳା ଖୋଳର ତକିଆ ଦି'ଟା ମୁଣ୍ଡପାଖକୁ ଥୁଆହୋଇଛି । ଖଟ ପାଖରେ ଛୋଟ ଷ୍ଟୁଲ୍‌ଟାଏ ଅଛି । ତା'ଉପରେ

ଟେବୁଲ୍ କୁଥିଟାଏ ଓ ଦୁଇଟା ଚୌକି ଅଛି । ଟେବୁଲ୍ ଉପରେ ଫାଇଲ୍ ଦୁଇ ତିନିଟା ଥୁଆ ହୋଇଛି । ପାଣି ଗ୍ଲାସଟା ଢ଼ଙ୍କା ହୋଇରହିଛି । କାନ୍ଥରେ ଆଲ୍‌ମାରି ଅଛି । କାଠ ଆଲମାରିଟାଏ ମଧ୍ୟ ଅଛି । ପାଖ କୋଠରିକୁ ଯିବାକୁ ମଝିରେ କବାଟ ଅଛି । ବିରାଟ ବିରାଟ ଝରକା । ଟେବୁଲ୍ ମଝିରେ ଲଣ୍ଠନ ଥୁଆ ହୋଇଛି । ପରିଷ୍କାର କାଚ଼ କବାଟ ଝରକାରେ ମୋଟା କନାର ଭାରି ପରଦା ଝୁଲୁଛି । ଚାରିଆଡ଼କୁ ଚାହିଁ ମୁଁ ଚେୟାର ଉପରେ ବସିପଡ଼ିଲି ।

ଦେହରୁ କୋଟ୍ ଖୋଲି ହେଙ୍ଗର୍‌ରେ ସଜାଡ଼ି, କାନ୍ଥ ଆଲମାରିରେ ଟାଙ୍ଗିଦେଲା ମନୋରମ । ଅନ୍ୟ ଚେୟାରରେ ବସି ପଚାରିଲା, ଚା' ପିଇବ ?

ମୁଁ କାନ୍ଥ ଆଲମାରିକୁ ଚାହିଁଥିଲି । କମକୁଟକରା ଶିଶୁ କାଠର କବାଟକୁ ଦେଖୁଥିଲି । ମୁହଁ ବୁଲେଇ ମନୋରମକୁ ଚାହିଁଲି । ପଚାରିଲି, ତମେ ପିଇବ ?

ସେ ମତେ ହିଁ ଚାହିଁଥିଲା । ମୁଁ ପଚରିବାରୁ ହସିଦେଇ କହିଲା, ମୁଁ ନପିଇଲେ ତମେ ପିଇବ ନାହିଁ ?

ତା'କଥା କହିବାର ଭଙ୍ଗୀ ଦେଖି ହସ ମାଡ଼ିଲା । କହିଲି, ସେମିତି କ'ଣ ଭଲ ଲାଗେ ?

ଆଃ ! ତମେ ବଂଚେଇଦେଲ ଆବାସୀ ! ବଂଚିଗଲି !

ମନୋରମ ତ'ଛାତିକୁ ଆଉଁସି ଚେୟାର୍‌ରେ ବସିପଡ଼ିଲା । ଆଖି ବୁଜିଦେଲା ।

ଏଥର ମୁଁ ଆଉ ହସ ଚାପି ରଖି ପାରିଲି ନାହିଁ । ହସି ଉଠିଲି ପାଟିକରି ।

ମନୋରମ ଡାକିଲା, ଫୋକାଲ୍.....

ସାହେବ ! ସଙ୍ଗେସଙ୍ଗେ ପରଦା ହଲିଗଲା ।

ଚା' ଦୁଇକପ୍ କର । ପାଖ ଘରଟାକୁ ସଫା କରିଦେବ । ଆଉ ଗୋଟେ ବିଛଣା ଚାଦର ନେଇ ପକେଇବ । ଦୁଇଜଣଙ୍କ ପାଇଁ ରାତିରେ ଖାଇବା କରିବ । ମନେ ରହିଲା ? ଯାଅ ।

ତା'ପରେ ମତେ ଚାହିଁ କହିଲା, ଓଃ ହୋ ଆବାସୀ ! ଆଜି ମୋର କି ଭାଗ୍ୟ ! ତମ ସହିତ ଯେ ଏମିତି ଭାବରେ ଭେଟ ହୋଇଯିବ, ଏକଥା ମୁଁ କାହିଁକି ଭାବିଥାନ୍ତି ଭଲା ! ଖରାପ ହୋଇ ବସ୍ ବାଟରେ ପଡ଼ିରହିବା କଥା ଆଜିକାଲି ଅତି ମାମୁଲି । ଦେଖ ତ ଆବାସୀ, ଖରାପଟା ମୋ ପାଇଁ କେତେ ଭଲ ହେଲା । ଭାରି ଖୁସି ଲାଗୁଛି । ଆଉ ତମ ଖବର କ'ଣ ?

ମନୋରମ ଚେୟାର୍‌ରେ ଆଉଜି ବସି ଗୋଡ଼ ହଲେଇଲା ।

ମୋ ଖବର ଆଉ କ'ଣ ! ମୋ ଖବର ତ ଜଣେ ମିସ୍‌ଟ୍ରେସ୍‌ର ଖବର । ସେ ଖବର ନ କହିଲେ ମଧ ସମସ୍ତେ ଜାଣନ୍ତି । ଜାଣିନିଅନ୍ତି । ତମ ଖବର କହ । ତମେ ଏଠି ଯେ......

ସରକାରଙ୍କର ଏକ ନୂତନ ଯୋଜନାକୁ ସଫଳ କରିବା ପାଇଁ ମତେ ଏଠାରେ ଅବସ୍ଥାପିତ କରାଯାଇଛି । ଆଦିବାସୀ ଉନ୍ନୟନ ସ୍ୱତନ୍ତ୍ର ପ୍ରଶାସକ ଭାବରେ ମୁଁ ଏଇ ସବ୍‌ଡିଭିଜନ୍‌ରେ ମୁତୟନ ହୋଇଅଛି ।

ଫୋକାଲ ଚା' ଦୁଇକପ୍ ଥୋଇଦେଇ ଚାଲିଯାଉଥିଲା । ମୁଁ ତାକୁ ପାଣିଗ୍ଲାସେ ଦେବାକୁ କହିଲି । ସେ'ପାଣି ଦେଇ ଚାଲିଗଲା । ଚା'ପିଇ ସାରିବା ପରେ ମନୋରମ କହିଲା, ଏଇଠି ବସିବା ନା ବାରଣ୍ଡାରେ ବସିବା ?

ବାରଣ୍ଡାରେ ବସିବା । ତେବେ ମୁଁ ଟିକେ ଗାଧୋଇଆନ୍ତି !

ଗାଧୋଇବ ତ ! ଆଉଟିକେ ଯାଉ । କିଛି ଅସୁବିଧା ନାହିଁ ।

-ତା'କଥା ଛଡ଼େଇ ନେଇ ମୁଁ ପରିହାସ କଲି, ତମେ ତ ଅଛ...

ଦେହରୁ ସାର୍ଟ ଓହ୍ଲେଇ ହ୍ୟାଙ୍ଗରରେ ସଜାଡୁଥିଲା ମନୋରମ । ବେଙ୍କ ଭାଙ୍ଗି ଡାହିଁ ହସିଲା, କହିଲା, ଠିକ୍ ! .... ଆଗ ଗପ କରିବା, ପରେ ଗାଧୋଇବ । ତ'ପରେ ହଠାତ୍ ମନେପଡ଼ିଗଲା ପରି କହିଲା, ତମେ ତ କିଛି ଖାଇ ନାହଁ ଆବାସୀ । ବିସ୍କୁଟ ଅଛି । ଚଳିବ ?

ମୁଁ ଭୋକ ନାହିଁ କହୁ କହୁ ସେ ପୁଣି ସଙ୍ଗେସଙ୍ଗେ କହିଲା, କ'ଣ ପେଟ ପୂରି ଯାଉଛି ?

ହଁ । ତା' ନୁହେଁ ତ ଆଉ କ'ଣ ! ପେଟ କେମିତି ପୂରିଯାଇଛି ଖାଇଲାବେଳେ ପ୍ରମାଣ ପାଇଯିବ ଯେ !

ବାରଣ୍ଡାରେ ଯାଇ ଠିଆହେଲି ମୁଁ । କେହି କେଉଁଆଡ଼େ ନାହିଁ । ସବୁ ଶୂନ୍‌ଶାନ୍ ! ନିର୍ଜ୍ଜନ !

ଗେଟ୍ ପର୍ଯ୍ୟନ୍ତ ଚାଲ । ବାହାରଟା ଦେଖି ଆସିବା - ସେକହିଲା ଓ ପାହାଚ ତଳକୁ ଓହ୍ଲେଇ ଗଲା । ପଛେପଛେ ମୁଁ ।

ଗେଟ୍ ବାହାରକୁ ଯାଇ ରାସ୍ତା ମଝିରେ ଠିଆ ହୋଇ, ମୁଁ ତ ଅବାକ୍ ତ ହୋଇଗଲିରେ ବାଣୀ !

ଅପରୂପ ବନସ୍ଥଳୀ !!

ଜହ୍ନ ଆଲୁଅ ନୁହେଁ, ଯେମିତି କି ଗୋଟାଏ ବିରାଟ ବୀଣା ବାଜୁଛି ଜ୍ୟୋତ୍ସ୍ନା ! ରୂପରେ । ଜ୍ୟୋତ୍ସ୍ନାର କୁଆର ତୁହାକୁ ତୁହା ଉଠିଲା ପରି ଦିଶୁଛି । ମନେ ହେଉଛି, ତାହା ହିଁ ବୀଣାର ତାର । ସେହି ହିଁ ଝଙ୍କାର ତୋଳୁଛି । ସେହି ଅଚିହ୍ନା ସୁର୍ ସହିତ ଗୋଳି ହୋଇ ରହିଛି ଗୋଟିଏ ଅଚିହ୍ନା ଗନ୍ଧ ।

କେଡ଼େ ମଧୁର ଗନ୍ଧ ! ମୁଁ ମନଭରି ନିଃଶ୍ୱାସ ଟାଣିନେଲି । ଆଖି ଯେମିତି ଭରିଗଲା, ବୁକୁ ବି ସେମିତି ପୂରିଗଲା !

କଅଁଳ ସବୁଜ ସମୁଦ୍ରରେ ଜ୍ୟୋତ୍ସ୍ନାର ଢ଼େଉ ! ଦୃଷ୍ଟିକୁ ମୁଗ୍ଧ କରୁଛି । ଅରଣ୍ୟ ଭୂଇଁରେ ବସନ୍ତର ପରିପୂର୍ଣ୍ଣ ପ୍ରକାଶ । ପବନରେ ମୁଣ୍ଡ କେଶ ଉଡୁଛି । ଶାଢ଼ି ଉଡୁଛି, ଶାଢ଼ିକୁ ସଜାଡ଼ିନେଇ, ଦୁଇ ହାତରେ ମୁଣ୍ଡକୁ ସାଉଁଳେଇ ନେଲି । କହିଲି, ସତରେ, ଚମତ୍କାର !

ମନୋରମ କହିଲା, ଅପୂର୍ବ ! ଏଇ ନୀରବ ଶୀତଳ କୁଆଁରୀ ସଞ୍ଜଟା ସତରେ ଅପୂର୍ବ ! ଗୋପାଳପୁର ସନ୍ଧ୍ୟା ତମର ମନେ ଅଛି ଆବାସୀ ?

ସଙ୍ଗେସଙ୍ଗେ ଅତୀତର ଅନେକ କଥା ମୋର ମନେ ପଡ଼ିଗଲା ।

ଅନେକ ଚିହ୍ନାମୁହଁ ଆଖି ଆଗରେ ଭାସିଗଲା । କହିଲି,

ଅତୀତଟା ଖୁବ୍ ସୁନ୍ଦର ଓ କଅଁଳ ।

ସୃଷ୍ଟିଧର କଥା ତମର ମନେଅଛି ?

ଅଛି ।

ମୁଁ ମନୋରମକୁ ଚାହିଁଲି । ସୃଷ୍ଟିଧର ମୋ'ପଛରେ ଲାଗିଥିଲା । ଅତି ଫରୱାର୍ଡ଼ ସେ । ମତେ ଆଦୌ ଭଲ ଲାଗେ ନାହିଁ ।

ଜାଣିଚ, ସେ'ପାଇଲହଡ଼ାରେ ଏସ୍.ଡ଼ି.ଓ. ଅଛି ! ଶେଷ ଚାନ୍ସରେ ଆଇ.ଏ.ଏସ୍. ପାଇଗଲା ।

ନା, ଏକଥା ଜାଣି ନଥିଲି ।

ମନୋରମ ସରଳ ଭାବରେ କହିଲା, ସେ ଏଯାଏଁ ବିବାହ କରି ନାହିଁ ।

ତମେ କରିଛ ?

ତମେ ସତରେ ବିଦୁଷୀ, ସୁନ୍ଦରୀ । ମନୋରମ ଶବ୍ଦକରି ହସୁହସୁ କହିଲା ।

ଦୂରରୁ କୋଳାହଳ ଶୁଭିଲା । ତା'ପଛକୁ କୁକୁର ଦଳେ ଭୁକି ଉଠିଲେ । ଶବ୍ଦ ଯେଉଁ ଦିଗରୁ ଆସୁଥିଲା ମୁଁ ଚାହିଁଲି । ଜୁଳୁଜୁଳିଆ ପୋକ ପରି କ୍ଷୀଣ ଆଲୋକବିନ୍ଦୁ କେତୋଟି ଦିଶିଲା ।

ପଚାରିଲି, ସେଇଟା ସେଇ ଆଦିବାସୀ ଶିକାର ଗାଁ ?

ହଁ । ଆସ ଏଥର ବସିବା ।

ମନୋରମ ବଙ୍ଗଳା ଆଡକୁ ଆସିଲା ।

ବାରଣ୍ଡାରେ ଦୁଇଟି କେନ୍ ଚେୟାର ଉପରେ ଦୁହେଁ ବସିଲୁ । ଲଣ୍ଠନକୁ ଦାବି ଦେଇ ପଛପଟକୁ ଆଡୁଆଳରେ ରଖିଦେଲା ସେ । ବାରଣ୍ଡା ଅନ୍ଧାର ହୋଇଗଲା ।

ବଙ୍ଗଳା ପଛପଟେ ରୋଷେଇଘର । ପୋକଲ ରାନ୍ଧୁଥାଏ ।

କିଛି ସମୟ ପରେ ମନୋରମ ପଚାରିଲା, ଏମିତି ଏକା ଆଉ କେତେଦିନ ରହିବ ? ତା'ସ୍ୱର ଗମ୍ଭୀର ଶୁଭିଲା ।

'ଏକା ଆଉ ରହିଲି କେଉଁଠି ? ସବୁବେଳେ ଶହଶହ ପିଲାଙ୍କ ପାଟିତୁଣ୍ଡ । ଦିନେ ଦିନେ ସେ କୋଳାହଳ ସ୍ୱର୍ଗ ଛୁଏଁ । ମନେହୁଏ, ମୁଣ୍ଡ ଭିତରେ ହାଟ ବସିଛି । ମୁଁ ହସିଲି । ଏଇ ଦେଖୁନାହଁ, ଏଇ ମୁହୂର୍ତ୍ତରେ ବି ଏକା ହେଇପାରିଲି ନାହିଁ ।

ଏଡ଼େଇଯାଅ ନାହିଁ ଆବାସୀ । ଖୋଲି କୁହ ।

ତା' କଣ୍ଠସ୍ୱରରେ ପୂର୍ବର ସେହି ଗମ୍ଭୀରତା ଥିଲା । ମୁଁ ତାକୁ ଚାହିଁଲି । କ'ଣ କହୁଚ଼ ? ମୁଁ ଠିକ୍ --

ବୁଝିପାରୁ ନାହିଁ ? ସହଜ ଭାବରେ ହିଁ ତେବେ କହୁଛି । ବିବାହ କରିନାହଁ ଯେ ! କିଛି କାରଣ ଅଛି କି ?

ଓଃ ! - ଲଘୁ ଭାବରେ କଥାଟାକୁ ନେବାକୁ ଯାଇ ମୁଁ ହାଲୁକା ଭାବରେ ହିଁ କହିଲି, ପୁରୁଷ ସିଂହ ଯେ ଆସି ନଥିଲେ ତା'ନୁହେଁ, ତେବେ ସେ ବିଷୟରେ ମୁଁ ମନସ୍ଥିର କରିପାରି ନାହିଁ । ମୋର ବରାବର ମନେ ହେଇଛି, ବିବାହ ମାନେ ଜୀବନଟାକୁ ଶିଳ-ଶିଳପୁଆରେ ରଗଡ଼ିକରି ବାଟିବା । ଭାଗ୍ୟରେ ଯଦି ଦକ୍ଷିଣି-ନାଲିଲଙ୍କା ପଡ଼ିଯାଏ ତେବେ ତ ମରିଯିବା କଥା ! ଦେହ ପୋଡୁଥିବ । ମନ ବି ତହୁଁ !

କହୁ କହୁ ମୁଁ ଫେଁ ଫେଁ ହସି ପକେଇଲି । ମନୋରମ କିନ୍ତୁ ସେ ବିଷୟରେ ଦୃଢ଼ପ୍ରତିଜ୍ଞ ପରି କହିଲା, ତମ କଥା ଭାବିବାକୁ ଘରେ କ'ଣ କେହି ନାହାନ୍ତି ?

ନା । ମୁଁ ସଳଖି ବସିଲି ।

କହିଲି କୁହ ତ, ଏତେ କଥା କାହିଁ ପଚାରୁଛ । ମୋର ତ ମନେହେଉଛି ତମ କାମ ସରିଯାଇଛି । ତେବେ ତମର କିଏ ବନ୍ଧୁ ଅଛନ୍ତି କି ? ଯିଏ କି... ନା' ସୃଷ୍ଟିଆକୁ କହିବ !

ଥାଉ । ଥାଉ । - ଆଉଜି ବସିଲା ସେ । ଗୋଡ଼ ଦୁଇଟାକୁ ଟି' ପୟ ଉପରକୁ ଲମ୍ବେଇ ଦେଲା । କହିଲା ମୋର ସେମିତି କେହି ବନ୍ଧୁ ନାହାନ୍ତି ।

ନିର୍ଲିପ୍ତ କଣ୍ଠ ସ୍ୱର ।

ରକ୍ଷାକର ।

କିଛି ସମୟ ନୀରବରେ ବିତିଗଲା ପରେ ମୁଁ କହିଲି, - ଭାବିଥିଲି ତମେ ନିଜ ତରଫରୁ ମିସେସ୍‌ଙ୍କ କଥା କହିବ । ବିଶେଷ କରି ପ୍ରଶଂସା ବଚନ ଢାଳିବ । ଯେମିତିକି ପତ୍ନୀ-ପ୍ରେମୀ-ସ୍ୱାମୀ ଦଳ କହନ୍ତି, ମାଇଁ ଓ୍ୱାଇଫ୍ ଏମିତି ସେମିତି, ମୋ'ମିସେସ୍ ଅମୁକ ଖାଇବାକୁ ଭଲପାଆନ୍ତି । ସମୁକଙ୍କୁ ଦେଖି ଦେଖି ଫିଙ୍ଗିଦେବେ । ତାକୁ ଦେଖିଲେ ନାକ ଟେକନ୍ତି । ଆକୁ ଦେଖିଲେ ଆଖି ବଡ଼ ବଡ଼ କରନ୍ତି । ମାଇଁ ଓ୍ୱାଇଫ୍ ଅମୁକ ସମୁକ ଜାଗା ସବୁ ବୁଲିଛନ୍ତି ।

ବେଶ୍ ଏକନିଃଶ୍ୱାସରେ ଗପି ପାରୁଛ ତ । ଆଗେ ତ ଏପରି ନଥିଲ ।

କହୁନା, ମିସେସ୍‌ଙ୍କ କଥା । ଟିକେ କୁହ । ଶୁଣିବା । ସତରେ, ଶୁଣିବାକୁ ଚାହୁଁଛି । ପଚାରୁଛ । ପରିହାସ ନୁହେଁ ।

ତମେ ତ ଜାଣ ଆବାସୀ, ମତେ କଥା ଭଲ କହିଆସେ ନାହିଁ । ବନେଇ ଚୁନେଇ ତ ଆଦୌ ନୁହେଁ । ତେଣୁ ଏମିତି ଦାମ୍ପତ୍ୟ-ମଧୁର ପଦାବଳୀ ମୁଁ କହିଲେ ତମ କାନକୁ ଚଣା ଫୁଟିଲା ପରି ଶୁଭିବ । ଆଉ କାହା ଠାରୁ ଶୁଣିଲେ ଭଲ ହେବ ।

ଆଉ କାହା ପାଖରୁ ମାନେ ? ଏଇ କେୟାର ଟେକର ନା ତମ ଡ୍ରାଇଭର, ଅଡର୍ଲିଙ୍କ ଠାରୁ, କାହା ପାଖରୁ ଶୁଣିବା କହିଲ ।

ହଠାତ୍ ମନେପଡ଼ିଯିବା ପରି ଚଞ୍ଚଳ ହୋଇପଡ଼ିଲା ମନୋରମ । ମୁହଁ ନୁଆଁଇ ଆଣି ନିମ୍ନ କଣ୍ଠରେ କହିଲା, ଆଚ୍ଛା, ଏଇମାନେ ତମକୁ କ'ଣ ଭାବୁଥିବେ କହିଲ ଦେଖି !...

କଣ ଆଉ ଭାବୁଥିବେ ? ମୁଁ ତାକୁ ଅନ୍ଧାର ଭିତରେ ଚାହିଁ କହିଲି, ଭାବୁଥିବେ କିଏ ଗୋଟାଏ ଦୂର ସଂପର୍କର କ'ଣ ଗୋଟାଏ ହେବ ଅବା ସାହେବଙ୍କ ବାପାଙ୍କ ଡାକର

ବାକରର ଝିଅ-ଝିଆରୀ କିମ୍ବା ସାହେବାଣୀଙ୍କର ଚାକରାଣୀ ହେବ । ଆଉ କ'ଣ ଭାବିବେ ଯେ !

ହୁଁ ! ଗମ୍ଭୀର ମୁହଁରେ ଗହୀରିଆ ହୁଁ ଟାଏ କଲା ସେ । କହିଲା, ଚେହେରା, ବେଶପଟା ଅବିକଳ ସେହିଭଳି ଦିଶୁଛି । ତା'ଛଡ଼ା, ଆଚ୍ଛା ଆବାସୀ, ସେମିତି ଲୋକଙ୍କୁ କ'ଣ ଏମିତି ବ୍ୟବହାର କରାଯାଏ ?

ଏମିତି ମାନେ ? ମୁଁ ତାକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲି । ଅନ୍ଧକାରରେ ବହୁ ସମୟ ରହିଯିବା ପରେ ଅନ୍ଧାରରେ ବି ଦେଖିହୁଏ । ତା'ଛଡ଼ା ବାରଣ୍ଡା ଉପରେ ଜହ୍ନଆଲୁଅ ପଡ଼ି ନଥିଲେ ମଧ୍ୟ ତଳୁ ଜହ୍ନ ଆଲୁଅର ଧାସ ଆସି ପଡୁଥାଏ । ମନୋରମର ନିର୍ନିମେଷ ଦୃଷ୍ଟି ମୋ' ମୁହଁ ଉପରେ ସ୍ଥିର ହୋଇଯାଇଥିଲା । ତା'ମୁହଁକୁ ସେ ତଳଆଡୁ ଉପରକୁ ଈଷତ୍ ହଲେଇ ଦେଲା । ତା'ର ଚିବୁକ ଉପରକୁ ଉଠିଆସିଲା ଓ ମୁଣ୍ଡଟା ପଛକୁ ଝୁଙ୍କି ହୋଇଗଲା । ଟାଣି ହେଲା ପରି କହିଲା-

ମାନେଟା ତମକୁ ବୁଝେଇବାକୁ ପଡ଼ିବ ଆବାସୀ ? ଭୋରର ଆଲୁଅ ପରି ତା' ମୁହଁରେ ହସ ଫିଟି ଆସିଲା । କିନ୍ତୁ ସେ ହସିଲା ନାହିଁ । ତା'ଆଖି ଉଜ୍ଜ୍ୱଳ ଦିଶିଲା ଓ ମୁହଁ ଉଦ୍‌ଭାସିତ ହୋଇ ଉଠିଲା ।

ମୋ ଦୃଷ୍ଟି ନରମ ହୋଇଗଲା । ତା'ମୁହଁ ଉପରୁ ଆଖି ଘୂରେଇ ନେଲି ।

ମନୋରମ କହିଲା, ସବୁ ମାନେର ଉତ୍ତର ନଥାଏ ବୋଲି ତମେ ତ ବହୁବାର କହିଛ ଆବାସୀ । ଅଥଚ ଆଜି ସେସବୁ କଥାକୁ ଭୁଲିଯାଇ 'ମାନେ' ପଚାରୁଛ । ସ୍କୁଲ୍ କଲେଜରେ ଆଜିକାଲି ବହୁ ମାନେ ବହି ଚଳୁଛି । ନୁହେଁ ? ପିଲାମାନେ ପାଠବହି ନକିଣି ମାନେ ବହି କିଣି ଦେଉଛନ୍ତି । ପାଶ୍ ମଧ୍ୟ କରିଯାଉଛନ୍ତି !

ମନସ୍ତତ୍ତ୍ୱବିତ୍ ! ତେଣୁ କଥାଟାଏ କହି ତାକୁ ଭୁଲେଇ ଭାଲେଇ କଣ୍ଢା ବାଉଁଶ ଗୁଣରେ ଛାଡ଼ି ଦେବାକୁ ତମକୁ ବା କେତେ କ୍ଷଣ ଲାଗିବ ?

ତମେ କେଉଁ କମ୍ କି ? -ଦୁଷ୍ଟ ହସ ହସି ସେ କହିଲା, ଆବାସୀ, ତମେ କ'ଣ ଚୁଟିଆ ସଂସ୍କୃତ ପଣ୍ଡିତ ନା ବୁଢ଼ା ଲାଇବ୍ରେରିଆନ୍ ? -ଏଥର ମନୋରମ ହୋ-ହୋ ହୋଇ ଶବ୍ଦକରି ହସିଲା ।

ତମେ କିନ୍ତୁ ମତେ ସତରେ ଭୁଲେଇ ଦେଲ । ମୋ ସ୍ୱରରେ କିଛି ଅଭିଯୋଗ ଥିଲା ।

- କ'ଣ ଭୁଲେଇ ଦେଲି ? ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ଏଇ, ତମ ଶ୍ରୀମତୀଙ୍କ କଥା ପଚାରୁଥିଲି ପରା !

ଓଃ ! ପୁଣି ସେଇ ଗମ୍ଭୀର କଣ୍ଠସ୍ୱର ।

କିଓ, ତୁମେ କ'ଣ ବିବାହ କରି ନାହିଁ କି ! ମୁଁ ସତରେ ବିସ୍ମିତ ହେଲି ।

ସେ ସବୁ ଥାଉ ଆବାସୀ !

କ୍ଲାନ୍ତିଭରା ସେହି କଣ୍ଠସ୍ୱରରେ ମୁଁ ଯେମିତି ଧକ୍କା ଖାଇ ଚୁପ୍ ହୋଇଗଲି ।

ମୋ ମନ ତଳେ ଭାବନାର ସମୁଦ୍ର ଲହଡ଼ି ପିଟୁଥିଲା । ଭାବୁଥିଲି, ମନୋରମ ମନରେ କ'ଣ ପାହାଡ଼ ପାହାଡ଼ ଦୁଃଖ ଅଛି ? ସେ କ'ଣ ବିବାହ କରି ନାହିଁ ? ନା ତା' ସ୍ତ୍ରୀ ଭଲ ନାହିଁ ! ଘରେ କ'ଣ ସେ ଅଶାନ୍ତିରେ ରହୁଛି ! ସେ କ'ଣ ସୁଖୀ ହୋଇପାରି ନାହିଁ ! କ'ଣ ହୋଇଛି ତା'ର ! ଏମିତି ଅସଂଖ୍ୟ ପ୍ରଶ୍ନ ମୋ ମନଭିତରେ ଅଶାନ୍ତ-ଲହରି ପାଇଟିଗଲା ।

ମନୋରମ ସୁଖୀ ନୁହେଁ- ଏଇ କଥାଟି ଭାବିଲା ମାତ୍ରେ, ମୋ ଛାତି ଭିତରେ କେମିତି ଗୋଟିଏ କଷ୍ଟ ଅନୁଭୂତ ହେଉଥାଏ । ସେହି ଦିନଯାଏ ମନୋରମକୁ ମୁଁ ନିଜର ବୋଲି ହିଁ ଭାବିଥିଲି । ପଢ଼ିଲାବେଳେ, ମୋ ପ୍ରତି ତା'ର ସ୍ନେହଭାବ ଅଧିକ ଥିଲା ଓ ତାହା ସେ ପ୍ରକାଶ କରିବାକୁ ଲଜ୍ଜା କି କୁଣ୍ଠା ବୋଧ କରୁ ନଥିଲା । ଏମିତି କି ଥରେ ମୋ' ଆଖିତଳେ ପାଉଡ଼ର ଲାଗି ଧଳା ଦିଶୁଥିଲା । ମୁଁ ତରତର ହୋଇ ଘରୁ ବାହାରି ଯାଇଥିଲି । ଯିବା ବାଟରେ ତା'ସହିତ ଦେଖାହୋଇଗଲା । ସେ ମଧ ମୋ ସହିତ ଗଲା । ମତେ କହିଲା, ଆଖିତଳ ଭଲକରି ପୋଛି ଦିଅ । ପାଉଡ଼ର ଲାଗିଛି । ଦର୍ପଣ ନଦେଖି, ଘରୁ ପଳେଇ ଆସିଛ !

ଆଉଥରେ ସେମିତି ଭୀଷଣ ଖରାରେ ମୋ ପାଇଁ ପାଣି ଆଣି ଦେଇଥିଲା । ଥରେ ରୁମାଲ୍ ନେବାକୁ ଭୁଲିଯାଇଥିଲି । ଭୀଷଣ ଖରାରେ ଯାଇ ନାକରୁ ଅପ୍ ଅପ୍ ହୋଇ ପାଣି ବୋହିପଡ଼ିଲା । ତଳକୁ ମୁହଁକରି ପାରୁ ନଥାଏ । ସେ ତା' ରୁମାଲ୍‌ଟା ଦେଇଥିଲା । ଏମିତି ଛୋଟ ଛୋଟ କେତେ କଥା ! ପ୍ରାକ୍ଟିକାଲ୍ ବେଳେ ମତେ ସାହାଯ୍ୟ କରେ । ବହି ଓ ନୋଟ୍ ଇତ୍ୟାଦି ଆଣି ଦିଏ । ଏମିତି କେତେ କଥା କେତେ ଘଟଣା ଘଟିଥିଲା ।

ଏ ସବୁ କିଛିକୁ ହିଁ ଆମେ ଦୁହେଁ ସ୍ନେହ ଦୃଷ୍ଟିରେ ଦେଖୁଥିଲୁ । ପରସ୍ପର ପରସ୍ପରକୁ ବନ୍ଧୁ ବୋଲି ବିଚାର କରିଛୁ । 'ମୁଁ' ନକହି ଆମେ ବୋଲି କହୁଛି । କାରଣ ସତରେ

ମନୋରମ ମନରେ ବା ମୋ ମନରେ ସ୍ନେହ-ମମତା ବ୍ୟତୀତ ଅନ୍ୟ କିଛି ନଥିଲା । ତା' ମନରେ ଅନ୍ୟ କିଛି ଥିଲେ ମୁଁ କ'ଣ ଜାଣିପାରି ନଥାନ୍ତି ବାଣୀ ?

ବାଣୀ କିଛି କହିଲା ନାହିଁ ।

ଆବାସୀ କହିଲା, ମନୋରମକୁ ନିଜର ବୋଲି ହିଁ ମୁଁ ଭାବି ଆସିଛି । ସେ ବାହା ହେଲା କି ନହେଲା, କି ଚାକିରି କରିଛି, କେଉଁଠି କିପରି ଅଛି- ଏସବୁ ମୁଁ କେବେ ଭାବି ନଥିଲି । କେବେ କେମିତି ଯେତେବେଳେ ମନୋରମକୁ ମୋର ମନେ ପଡ଼ିଛି, ସେତେବେଳେ ଛାତ୍ର ବେଳର, ବିଦ୍ୟାର୍ଥୀ ସେହି ମନୋରମ, ସହପାଠୀ ମନୋରମ ହିଁ ମୋ ଆଖି ଆଗରେ ଠିଆହୋଇଛି । ନରମ ଚେହେରାର ସୁନ୍ଦର ଗଢ଼ଣ । ମିଠା ମିଠା ହସଭରା କଅଁଳ ଚିକ୍କଣ ମୁହଁ । ଜାମା ପ୍ୟାଣ୍ଟ ଦାମୀ ନୁହେଁ, କିନ୍ତୁ ବେଶ୍ ପରିଷ୍କାର । ପରିଚ୍ଛନ୍ନ, ସଫା-ସୁତୁରା ରହିବା ତା'ର ବରାବର ଅଭ୍ୟାସ । ତାକୁ କୌଣସି ପରିସ୍ଥିତିରେ ଉଦ୍‌ବିଗ୍ନ ହେବାର ମୁଁ କେବେ ଦେଖିନାହିଁ । ଅତି ସାଙ୍ଘାତିକ ସମୟରେ ବି ଭାବିଚିନ୍ତି, ଧୀର-ସ୍ଥିର ଭାବରେ କଥା କହେ । ସିଦ୍ଧାନ୍ତ ନେଇପାରେ । ନାନା ବିରୁଦ୍ଧ ଚିନ୍ତା ଭିତରେ ଅତି ଶାନ୍ତ ଭାବରେ ବସିଥାଏ ।

ସେହିଦିନ ଦୀର୍ଘ ବର୍ଷ ବର୍ଷ ପରେ, ସ୍ପେଶାଲ୍ ଅଫିସର ମନୋରମକୁ ଦେଖି ମୁଁ ନିଜର ବୋଲି ହିଁ ଭାବିନେଲି । ତା' ଉପରେ ମୋର ଯେଉଁ ସ୍ୱତ୍ୱବୋଧଟା ଥିଲା - ତା' ବଳବତ୍ତର ହେଲା ସିନା, କମିଗଲା ନାହିଁ । ତା' ସ୍ତ୍ରୀକୁ ଦେଖିଥିଲେ କି ଭାବାନ୍ତର ଆସିଥାନ୍ତା ମୁଁ କହିପାରୁ ନାହିଁ । କିନ୍ତୁ ସେଦିନ ରାତିରେ ସେହି ଡାକବଙ୍ଗଳାରେ ମୁଁ ମୋ ନିଜର ଚିନ୍ତା ଭାବନା ଭିତରେ ମୋ ଜୀବନରୁ ମନୋରମକୁ ବାଦ୍ ଦେଇପାରିଲି ନାହିଁ । କି ତା' ଜୀବନରୁ ବି ମତେ ବାଦ୍ ଦେଇପାରିଲି ନାହିଁ ।

ସେ ରାତିର ସେହି ଭାବନାରାଜିକୁ ମୁଁ ତୋ' ଆଗରେ କେମିତି ପ୍ରକାଶ କରିପାରିବି ଲୋ ବାଣୀ ! ଭାଷା ହିଁ ନାହିଁ ।

ପ୍ରେମ କ'ଣ ମୁଁ ଜାଣେ ନାହିଁ । କିନ୍ତୁ ସେହି ରାତିରେ ସେହି ଚିନ୍ତା, ସେହି ଭାବନା, ସେହି ଆବେଗ, ମଧୁରତା, ସେହି ଅନୁଭବ ଅନୁଭୂତି ଏହିସବୁ ଯଦି ପ୍ରେମ, ତେବେ ସେହି ମୁହୂର୍ତ୍ତରେ ହିଁ ତା' ଆରମ୍ଭ ହେଲା ।

ସେହି ମୁହୂର୍ତ୍ତକ ଭିତରେ ମୋ ଭିତରଟା ସମ୍ପୂର୍ଣ୍ଣ ଓଲଟପାଲଟ ହୋଇଗଲା ।

ବାଣୀରେ, ଆଜୀବନ ନହେଲେ ବି ଆଯୌବନ ଯେ ମୁଁ ପାଷାଣ ଥିଲି । ଏହା ଆଉ କେହି ନଜାଣିଲେ ବି ତୁ' ତ ଜାଣୁ । କିନ୍ତୁ ସେଇ ପାଷାଣ ତଳେ ନିର୍ଝରଟିଏ

କେଉଁଠି ଆତ୍ମପ୍ରକାଶ ପାଇଁ ପଥ ଖୋଜୁଥିଲା, ତା' ନିଜେ ଜାଣିପାରି ନଥିଲି । ସେହି ପାଷାଣକୁ ଫଟେଇ ନିର୍ଝରିଣୀଟି ଯେ ବାହାରି ଆସିଲା, ତା'ର ପ୍ରବଳ ସ୍ରୋତରେ ମୁଁ କୁଟାଖିଅଟିଏ ହୋଇଗଲିରେ ବାଣୀ !

ଆବାସୀ ନିଃଶ୍ୱାସ ନେଲା ।

ବେଶ୍ କିଛି ସମୟ ବିତିଗଲା !

ନୀରବତା ଭଙ୍ଗ କରି ମନୋରମ ହସନ୍ତ ଆବେଗମୟ କଣ୍ଠରେ ଡାକିଲା, ଆବାସୀ !

ତା'ର ଡାକ ଡାକବଙ୍ଗଳାର ପ୍ରଶସ୍ତ ବାରଣ୍ଡା କାନ୍ଥରେ ପ୍ରତିହତ ହୋଇ ଫେରିଆସିଲା ।

ମୁଁ କିଛି ନକହି ତାକୁ ଚାହିଁଲି ।

ସେ ମତେ ଚାହିଁ କହିଲା, ଆରେ, ଏମିତି ଚୁପ୍ ହୋଇ ବସିରହିଲ ଯେ ! ମୁଁ କ'ଣ ତେବେ... ସେ ଆଉ କିଛି କହିଲା ନାହିଁ । ହଠାତ୍ ଚୁପ୍ ହୋଇଗଲା ।

ପଚାରିଲି, କ'ଣ ତେବେ ?

ନା, ଥାଉ ।

କଥା ଆରମ୍ଭ କରି ଅଧା ରଖିବା ଅଭ୍ୟାସ ତମର ତ ନଥିଲା । ସାଇକୋଲୋଜିର ଛାତ୍ର ବୋଲି ସେ ଯେଉଁ ଗର୍ବ ତମର - ଆଜି କ'ଣ ଆଉ ନାହିଁ କି ?

ହସିଲା ମନୋରମ ।

କହିଲା, ତମେ ସେଇ କଥା ମନେ ରଖିଛ ଆବାସୀ ! ତେବେ ଏକଥା ଭୁଲିଗଲେ ଚଳିବ କେମିତି ଯେ, ସେ ଦିନର ମନୋରମ ଛାତ୍ର ଥିଲା । ଆଜିର ମନୋରମ.... ତା' କଣ୍ଠସ୍ୱରରେ ଖୁସି ଖୁସି ଭାବ ଭରି ରହିଥିଲା ।

ମୁଁ କହିଲି, ଥାଉ ଥାଉ । ବେଶୀ ହୋଇଗଲା ପରି ଶୁଭୁଛି । କୁହ, କ'ଣ କହୁଥିଲ ?

ଆଶ୍ଚର୍ଯ୍ୟ ! ଉତ୍ତର ନଶୁଣିବା ଯାଏ ତମେ ବି ଅସ୍ଥିର । ସନ୍ତୁଷ୍ଟ ନୁହଁ !

ପଚାରିଲି, ତମେ ହୁଅନି ?

ମୋ କଥା ଛାଡ଼ ।

କାହିଁକି ? ମୁଁ ଟିକେ ଚଢ଼ା ସ୍ୱରରେ କହିଲି ।

- ଅନେକ ଉତ୍ତର ପ୍ରାୟ ତମେ ଜାଣିଥାଅ । ନୁହେଁ କି ? ତମକୁ କିଛି କହିବାକୁ ମତେ ବି ପଡ଼ିନାହିଁ ଆବାସୀ !

ତା'ପରେ ସେ ସହାସ୍ୟରେ କହିଲା, ମନ ବୁଝିବାରେ ତମେ ଅଦ୍ୱିତୀୟ । ତେଣୁ ବୁଢ଼ା ସାର୍ ତମକୁ କ'ଣ କହନ୍ତି ତାହା ମନେ ଥିବ । ଆଉ ସେଇଥିପାଇଁ ଯେ ତାଙ୍କ ଉପରେ ମୋର କେତେ ରାଗ ଆସେ । ସେ କଥା ଅନ୍ୟ କିଏ ନଜାଣିଲେ ବି ତମେ ତ ଜାଣ !

ଆଲୁଅ ମୋ ମୁହଁରେ ପଡୁ ନଥିଲା । ନହେଲେ ମୁହଁଟା କେମିତି ଦିଶିଥାନ୍ତା କେଜାଣି ! ମୁଁ ଲାଜରେ ତଳକୁ ମୁହଁ ପୋତି ଦେଲି ।

କୋଉ ଯୁଗର କଥାକୁ ମନୋରମ ମନେ ରଖିଛି । ପୁଣି କହୁଛି । ଧେତ୍ ! ଲାଳଚିଆ ପ୍ରକୃତି ପାଇଁ ବୁଢ଼ାଟା ଉପରକୁ ସମସ୍ତେ ବିରକ୍ତ ହୁଅନ୍ତି । ଝିଅମାନଙ୍କ ପିଠିକୁ ଆଉଁସି ଦେଉ ଦେଉ ବ୍ରା'ର ହୁକ୍ ପାଖରେ ହାତ ରଖି ଟିକେ ଟାଣିଦେବ । ସାର୍‌କୁ ଏବେ କିଏ କ'ଣ କହିବ । କହିଲେ ନିଜେ ହାସ୍ୟାସ୍ପଦ ହେବା କଥା । ବୁଢ଼ାଟା ଗଦ୍ ଗଦ୍ ହୋଇ କାନ୍ଧରେ ହାତ ପକେଇ ଏମିତି ଝୁଙ୍କେଇଦେବ ଯେ, ସାରା ଦେହ ଦୋହଲି ଉଠିବ । ଅଶ୍ୱସ୍ତି ଲାଗିବ । ପାନଖିଆ ବୋଳବସା ଦାନ୍ତ ଦେଖେଇ ମାଙ୍କଡ଼ିଆ ହସ ହସି କହିବ, ଏତିକିବେଳେ ତୋର ପାଠ ବୁଝିବାକୁ ଥିଲା । ରବିବାର ଦଶଟା ବେଳେ ଡିପାର୍ଟମେଣ୍ଟକୁ ଆସିବୁ । ଭଲରେ ବୁଝିଯିବୁ । କୋଉ ପୁଅ ପିଲା କାନରେ ଯଦି ଏ କଥାଟା ପଡ଼ିଯାଇଛି, ପଛରୁ ପାଟି ଶୁଭେ, ଇରେ,ରାତି ଦଶଟା ନା ପାହାନ୍ତା ଦଶଟା ।

ବୁଢ଼ା ରଡ଼ି ଛାଡ଼େ, କିଏ ବେ' ତୁ । ଏଠିକି ଆସିଲୁ, ମୁହଁ ଦେଖା ! କ'ଣକହୁଛୁ, ଏଇଠି କହ ! ତା' ପରେ ଧୀର ସ୍ୱରରେ କହେ, ଆମେମାନେ ଆମ ସାର୍‌ଙ୍କ ପଛରେ କେତେ ଦଉଡ଼ି ଦଉଡ଼ି ଥକିଛୁ, ତମେମାନେ ଜାଣିଛ ? କିନ୍ତୁ ତମମାନଙ୍କର ସେହି ଆନୁଗତ୍ୟ କାହିଁ ? ଆମେ ଡ଼ାକିଲେ ବି ତମେମାନେ କେହି ଆସୁ ନାହଁ । ଆଗ୍ରହ ନାହିଁ । ଆଉ ହେବ କ'ଣ !

ବୁଢ଼ା କଥା ଶୁଣିବା ମାତ୍ରେ, ମୋ ଦେହ ଶିର୍ ଶିରେଇ ଉଠେ । ମନୋରମ ଗାରେଡେଇ ଅନେଇ ଥାଏ । ଅନ୍ୟ ସାଙ୍ଗସାଥୀ ଥିଲେ ହସୁଥାନ୍ତି । ଆମ ସାଙ୍ଗରେ ଶ୍ରୀକୃଷ୍ଣ ପଢ଼େଇ ବୋଲି ପିଲାଟେ ପଢୁଥାଏ । ସେ କହେ, ବୁଢ଼ା ଆଖିକି ମୁଁ ନିଶ୍ଚୟ ତାଡ଼ି ଦେବି । ତା' ଦାନ୍ତକୁ ଉପାଡ଼ିଦେବି । ଏସବୁକୁ ମିଉଜିୟମକୁ ପଠାଇବି । ଜାତୀୟ ସମ୍ପତ୍ତି ହୋଇ ରହିବ ।

ବୁଢ଼ାଟା ମୋରି ସାଙ୍ଗରେ ବେଶୀ ଲାଗେ । ସେସବୁ କଥା ମନୋରମ ମନେରଖିଛି ।

ଧେତ୍ ! କଥା ବୁଲେଇବାକୁ ମୁଁ କହିଲି, ବାଥ୍‌ରୁମ୍‌ଟା କେଉଁଠି ? ଏଥର ଉଠିବା ଧୁଆଧୋଇ ହେବା ।

ଅନ୍ଧାର ଯୋଗୁ ମନୋରମର ମୁହଁ ସ୍ପଷ୍ଟ ଦିଶୁ ନଥିଲା । ତେବେ ସେ ଯେମିତି ଅଳ୍ପ ହସିଲା, ମୋର ଚତୁରତାକୁ ବୁଝି ନେବାପରି । ସେହିପରି ହିଁ କହିଲା, ଏପରି ରସାଳ କଥାକୁ ବନ୍ଦ ରଖି ଗାଧୋଇବାକୁ ଯିବ ?

ନବୁଝିବାର ଛଳନା କରି କହିଲି, ବସ୍‌ରେ ଆସୁଥିଲି ତ ! କେମିତି ଝାଳୁଆ ଝାଳୁଆ ଗନ୍ଧ ଲାଗୁଛି । ଅଶାନ୍ତି ଲାଗୁଛି ।

ମୁଁ ଠିଆହେଲି । ସେ ବାରଣ୍ଡା ଶେଷ ମୁଣ୍ଡକୁ ଯାଇ ଫୋକାଲକୁ ଡାକିଲା । ମୁଁ ଘର ଭିତରକୁ ଆସି ଅନ୍ୟ କୋଠରିଟିକୁ ବୁଲିବୁଲି ଦେଖିଲି । ଦୁଇଟି ଯାକ କୋଠରି ଏକାପରି । ମୁଁ ଝରକା ପାଖରେ ଠିଆ ହେଲି ।

ମନୋରମ ପାଟି କରି ପଚାରୁଛି, ଗାଧୁଆଘରେ ସବୁ ଠିକ୍ ଅଛି ତ ? ଗରମପାଣି,ସାବୁନ୍‌କେଶ ସବୁ ଅଛି ତ ଫୋକାଲ ?

ସବୁ ଠିକ୍ ଅଛି ସାହେବ । ଅତି ନିରୀହ ଉତ୍ତର ।

ଆଚ୍ଛା !

ମନୋରମ ଆସିଲା । ମତେ କହିଲା, ଗାଧୋଇବ ପରା, ଯାଅ । ସେଇଠି ତଉଲିଆ, ସାବୁନ ସବୁ ଅଛି । ସେ ସବୁ ମୋର । ଡାକ ବଙ୍ଗଳାର ନୁହେଁ । ବ୍ୟବହାର କରିବାକୁ ଅସନା ଲାଗିବ ନାହିଁ ତ !

ଆଟାଚି ଖୋଲି ମୁଁ ଶାଢ଼ି କାଢ଼ିଲି । କିନ୍ତୁ ଏ କ'ଣ ! ଏ ଶାଢ଼ି ତ ମୋର ନୁହେଁ । ମୋ ଶାଢ଼ି କାହିଁ ? ଆଟାଚି ଖେଳେଇଗଲି । ଆଉ କିଛି ଶାଢ଼ି ନଥିଲା ।

କେଉଁଝର ଗଡ଼ରେ ଯାହାଙ୍କ ପାଖରେ ଥିଲି, ତାଙ୍କରି ଛଅବର୍ଷର ଝିଅ ମୋ ଠାରୁ ଛଡ଼େଇ ନେଇ, ମୋ ଜିନିଷପତ୍ର ସଜାଡ଼ି ଥିଲା । ଧୋବାଘରୁ ଆସିଥିବା ତାଙ୍କର ଲୁଗା ଥାକଟା ଖଟ ଉପରେ ଥୁଆ ହୋଇଥିଲା । ପିଲାଟା ଜାଣିପାରି ନାହିଁ । କେମିତି ବଦଳ ହୋଇ ଯାଇଛି । ମୋ ଶାଢ଼ିଟି ରହିଯାଇ ତା ବୋଉ ଶାଢ଼ିକୁ ଥୋଇ ଦେଇଛି ମୋ ଆଟାଚିରେ ।

ଅନ୍ୟର ଲୁଗାପଟା ପିନ୍ଧିବାର ସୁଯୋଗ ହେଉ କି ଦୁର୍ଯୋଗ ହେଉ, ମୋର କେବେ ହୋଇନାହିଁ । କିନ୍ତୁ କ'ଣ ଆଉ କରାଯାଏ ! ନାଲି ବର୍ଡରର, ଚେକ୍ ପକା ବୋହୂ ବୋହୂକା ଶାଢ଼ିଟିଏ ଅଗତ୍ୟା ପିନ୍ଧିବାକୁ ହେଲା ।

ବାଥ୍‌ରୁମରୁ ବାହାରି ଆସିବା ପରେ ବେଶ୍ ଭଲ ଲାଗିଲା । ଚୌକି ଉପରେ ବସି, ଟେବୁଲ୍ ଉପରକୁ ଝୁକି ପଡ଼ିଛି ମନୋରମ । ଚେକ୍ ଚେକ୍ ଲୁଙ୍ଗି ପିନ୍ଧିଛି । ଟର୍କିସ୍ ତଉଲିଆଟା ପିଠିକୁ ଘୋଡ଼ାଇ, ଦୁଇ ବାହୁ ଯାଏ ଓହଳି ରହିଛି ।

ମୁଁ ଜାଣି ଜାଣି ପାଦ ଘୋଷାରି ଦି'ପାଦ ଚାଲିଗଲି । ସେ ପଛକୁ ବୁଲି ଚାହିଁଲା ।

ସେହି ଚାହିଁବାର ଭଙ୍ଗୀ, ସେହି ଦୃଷ୍ଟି ଏବେ ବି ମୋର ମନେ ଅଛିରେ ବାଣୀ । ତା' ଆଖିର ମୁଗ୍ଧଭାବ ମତେ ଯେମିତି ସାର୍ଥକ କରି ଦେଲା ।

ମୁଁ ମୁହଁ ବୁଲେଇ ନେଲି ।

କାନ୍ଥରେ ଟଙ୍ଗା ହୋଇଥିବା ବଡ଼ ଦର୍ପଣରେ ମୋର ଦେହ ଦିଶୁଛି । ଶାଢ଼ିର ନାଲିଆ ରଙ୍ଗରେ ଦର୍ପଣରୁ ଗୋଟାଏ ନାଲିଆ ଆଭା ବାହାରୁଛି ଯେମିତି । ମତେ ଖୁବ୍ ଭଲ ଲାଗିଲାରେ ! ଇତସ୍ତତଃ ହୋଇ କହିଲି, କ'ଣ ଲେଖୁଛ ?

କିଛି ନ କହି ସେମିତି ଚାହିଁ ରହିଲା ସେ ।

ତା' ଆଖିରୁ ଆଢୁଆଳ ହେବାକୁ ଯାଇ ମୁଁ ଭ୍ୟାନିଟି ବ୍ୟାଗ ଖୋଲି ପାନିଆ କାଢ଼ିଲି । ବ୍ୟାଗ ଉପରେ ନଇଁପଡ଼ି କହିଲି, ଛୋଟ ଦର୍ପଣ ଅଛି ?

ଅଛି ।

ମନୋରମ ମତେ ଚାହିଁ ହସୁଥିଲା । କହିଲା, ଦେଖ, ସେଇ ଆଲମାରିରେ ଥୁଆ ହୋଇଛି । ପାଉଡ଼ର କିନ୍ତୁ ନାହିଁ । ସେ' ହସିଦେଲା । ତା'ପରେ ଯେମିତି ମନେ ପଡ଼ିଗଲା ସେମିତି କହିଲା, ଆବାସୀ, ସେଇ ଆଲମାରିରେ ଧୂପକାଠି ଓ ଦିଆସିଲି ଅଛି । ଧୂପକାଠି ଦି'ଟା ଲଗେଇ ଦିଅ ତ !

ମନୋରମର ଏପରି ଅକପଟ ବ୍ୟବହାର ମତେ ଖୁବ୍ ଭଲ ଲାଗିଲା ।

ପରିହାସ କଲି, ପାଉଡ଼ର ନହେଲେ ତ ମୋର ଚଳିବ ନାହିଁ ।

ଚଳିବ ନାହିଁ ?

ମୋ ଆଖିରେ ତା' ଆଖି ମିଶିଗଲା ଓ ତା'ର ଦୃଷ୍ଟି ଯେମିତି ମୋ' ଛାତି ପର୍ଯ୍ୟନ୍ତ ଗଳିଗଲା । ମୁଁ ଚଟ୍‌କରି ମୁହଁ ତଳକୁ କରି ଉଠିଗଲି ।

ସେ କହିଲା, ଶୁଣ । ଏ ଆବାସୀ, ଶୁଣମ - । କ'ଣ କହିଲ, ପାଉଡ଼ର ଦରକାର ! ଠିକ୍ ଅଛି । ଜ୍ୟୋତ୍ସ୍ନାର ପାଉଡ଼ର ତ ସର୍ବଶ୍ରେଷ୍ଠ ପାଉଡ଼ର ! ତାହା ତ ଚଳିବ । ଚାଲ । ତମ ଉପରେ ଆଞ୍ଜୁଳା ଆଞ୍ଜୁଳା ଜ୍ୟୋତ୍ସ୍ନା ପାଉଡ଼ର ବିଛେଇ ଦେବି ।

ତାକୁ ନଚାହିଁ କହିଲି, ଭାରି ତ କଥା କହିଲଣି । ଜ୍ୟୋତ୍ସ୍ନା ପାଉଡ଼ର ଗୋଟାଏ ଅଛି ନା କ'ଣ ! ଥିଲେ ଥାଉ । ରଖିଥା । ମିସେସ୍‌ଙ୍କୁ ଦେବ ।

ମୁଁ ଧୂପବତୀ ଜାଳିଲି । ହାତଯୋଡ଼ି ମୁଣ୍ଡନୁଆଁଇ ପ୍ରଣାମ କଲି । ତା'ପରେ ଦର୍ପଣ ଆଣି, ମୁହଁ ଦେଖିବାକୁ ଯାଉଛି, ଚାହିଁ ଦେଖେ ତ ମନୋରମ ମତେ ସେମିତି ଚାହିଁଛି ।

ଦୃଷ୍ଟି ମିଶିଗଲା । ବିଜୁଳି ଚମକି ଗଲା ।

ସେ ସଙ୍ଗେ ସଙ୍ଗେ ଝାଡ଼ି ହୋଇପଡ଼ି, ଉଠି ଠିଆ ହୋଇଗଲା । କହିଲା, ମୁଁ ଆସୁଛି । ସେ ବାଥ୍‌ରୁମ ଆଡ଼େ ଚାଲିଗଲା ।

ମୁଁ ଦର୍ପଣରେ ନିଜକୁ ଦେଖି ଭୟଙ୍କର ଭାବେ ଅବାକ୍ ହୋଇଗଲି ।

ମୁଁ ଅନ୍ୟ ପ୍ରକାର ଦିଶୁଥିଲି । ଅନେକଟା ବୋହୂ ବୋହୂ ପରି । ସାଧାରଣତଃ ସେମିତି ଶାଢ଼ି ସାଙ୍ଗକୁ କପାଳରେ ସିନ୍ଦୂର ଓ ପାଦରେ ଝୁଣ୍ଟିଆ ଥାଏ । ହାତରେ ମଧ କାଚ ବା ଶଙ୍ଖା ମାନୁଥାଏ । କିନ୍ତୁ ମୋର ତ ଗତ୍ୟନ୍ତର ନଥିଲା ।

କିଛି ସମୟ ପରେ ମନୋରମ ଆସିଲା ।

ଏଥର ବିସ୍ମିତ ହେବାର ପାଳି ମୋର ।

ଧଳା ଟ୍ରାଉଜର ଓ ଲକ୍ଷ୍ନୌ କାମକରା ପଞ୍ଜାବୀ ସେ ପିନ୍ଧିଥାଏ । ଭାରି ମାନୁଥାଏ ତାକୁ । ମୁଣ୍ଡରେ ପାନିଆ ଚଳେଇ ସାରି, ଓଦା ତଉଲିଆରେ ମୁହଁ ପୋଛିଲା ।

ମଜା କରିବାକୁ କହିଲି, ମୋ ପାଖରେ ପାଉଡ଼ର ଅଛି । ନିଅ ଲଗାଅ ।

ଖୁସି ହୋଇଗଲା ମନୋରମ । କହିଲା, କାଇଁ, ଦିଅ । ଦିଅ । ତମ ପାଉଡ଼ରକୁ ମେଖାଏ ମୁଁ ବୋଳି ହୋଇପଡ଼େ ।

ସେ ବାଁ ହାତ ପାପୁଲି ଦେଖେଇଲା ।

ମୁଁ ତା' ପାପୁଲି ଉପରେ ପାଉଡ଼ର ଡ଼ବାଟା ଥୋଇ ଦେଲି ।

ସେ ଖୁସିରେ ଗଦ୍ ଗଦ୍ ହୋଇ କହିଲା, ବାଃ ! ମୁଁ ତ ସାମାନ୍ୟ ଚାହିଁଲି । କିନ୍ତୁ ତମେ ଦେଲା ପରି ହିଁ ଦେଲ !

ଡ଼ବାକୁ ଆଲୁଅରେ ଦେଖିଲା । ପାପୁଲିରେ ଛିଞ୍ଚାଡ଼ି ନାକ ପାଖରେ ଶୁଙ୍ଘିଲା । କହିଲା, ଓଃ ! ଚମତ୍କାର ଚନ୍ଦନ ବାସ୍ନା ତ ! ତମେ ଯେମିତି ତମ ପାଉଡ଼ର ସେମିତି ! ଏ ଚନ୍ଦନ ପାଉଡ଼ର କ'ଣ କେବଳ ତମରି ପାଇଁ ତିଆରି ହୁଏ ?

ମୁଁ କହିଲି, ନା, ତମମାନଙ୍କ ପରି ଅଫିସର ଦଳଙ୍କ ପାଇଁ ବି ତିଆରି ହୁଏ । କିନ୍ତୁ ଜ୍ୟୋତ୍ସ୍ନା ପାଉଡ଼ର କେବଳ ମନୋରମଙ୍କ ପାଇଁ ହିଁ ତିଆରି ହୁଏ । ନୁହେଁ ?

ମୋ କଥାରେ ତା' ମୁହଁରେ ବାଳକ ସୁଲଭ ହସଟିଏ ଫୁଟି ଉଠିଲା ।

ସତରେ ବାଣୀ, ତା'ର ଏଇ ହସଟି ଅତି ସୁନ୍ଦର । ମତେ ଭାରି ଭଲ ଲାଗେ । ମୁଁ ନକହି ରହିପାରିଲି ନାହିଁ ।

ତମ ହସ ତ ବଦଳି ନାହିଁ ! ଭଲ ।

ସଙ୍ଗେ ସଙ୍ଗେ ମୋ ପାଖକୁ ମାଡ଼ି ଆସି ସେ କହିଲା,

ମୁଁ କ'ଣ ବଦଳି ଯାଇଛି ?

କହିଲି, ସରକାରଙ୍କ ପଦସ୍ଥ ଅଫିସର ହୋଇ ଆଜି ବି ତମେ ଏମିତି ହସ ଯେ ହସି ପାରୁଛ ନଦେଖିଲେ ବିଶ୍ୱାସ ହେବ ନାହିଁ । ଏ ଯୁଗରେ କେତେ ଜଣ ଏମିତି ସରଳ ହସ ହସି ପାରୁଛନ୍ତି ?

ତମେ ବି ତ ସେଇ ଆଗ ପରି ସରଳ ବିଶ୍ୱାସୀ ଅଛ, ଆବାସୀ । ଏ ଯୁଗରେ କଥାବାର୍ତ୍ତାରୁ, ହସ କାନ୍ଦରୁ ଯଦି ମଣିଷ ଚିହ୍ନି ହେଉଥାନ୍ତା ତେବେ ଏତେ ଭଣ୍ଡାମୀ ଠକାମି ବ୍ୟଭିଚାର ନ ଥାନ୍ତା । ତମମାନଙ୍କ ପରି ଝିଅମାନଙ୍କ ପାଇଁ ଏତେଟା ବିଶ୍ୱାସ କେବେ ହେଲେ ନିରାପଦ ନୁହେଁ । - ସେ ଏଥର ଦୁଷ୍ଟ ହସ ହସିଲା ।

ମୁଁ ରାଗିବାର ଛଳନା କଲି । କହିଲି, ମୁଁ କିନ୍ତୁ ଝିଅ ନୁହେଁ ।

ସେ ହସି ହସି ମେଞ୍ଚାଏ ପାଉଡ଼ର ନେଇ ବେକ ମୂଳେ ବୋଳି ଦେଲା । ମୁହଁରେ ପୁଳାଏ ବୋଳି ଦେଲା । ଡ଼ବା ବନ୍ଦକରି ଥୋଇଦେଇ, ଦୁଇ ପାପୁଲିକୁ ଘଷି ପୁଣିଥରେ ସୁଁ କରି ଜୋରରେ ଶୁଙ୍ଘିଲା ।

ମୁଁ କହିଲି, ଦେଖୁଛି, ଚିଡ଼େଇବା ଢ଼ଙ୍ଗ ତମର ଆଜି ବି ଯାଇନି ।

ଚିଡ଼ଉ ନାହିଁ ଆବାସୀ । ସତରେ ଭଲ ବାସୁଛି । ଚମତ୍କାର !

ମୁଁ ଖଟ ଉପରେ ଅଧା ଆଉଜିଲା ପରି, କାନ୍ଥରେ ମୁଣ୍ଡ ଡ଼ିରା ଦେଇ ବସିଲି । ମତେ ପଚାରିଲା, ଶୋଇବ କି ?

ମୁଁ ଶୋଇ ପଡ଼ିଲେ ସରକାରୀ ଫାଇଲ୍ କାମରେ ଲାଗିଯିବାକୁ ତମର ସୁବିଧା ହେବ ତ ?

ଆରେ ନା’ ନା, ସେ କଥା ନୁହଁ । ଉଚ୍ଚ କଣ୍ଠରେ, ଖୁବ୍ ଉଚ୍ଚ କଣ୍ଠରେ ହୋ ହୋ ହୋଇ ହସି ଉଠିଲା ସେ । କହିଲା, ତମେ କ୍ଲାନ୍ତ ଦିଶୁଛ । ସେଇଥି ପାଇଁ କହିଲି । ସେ ପୁଣି ହସିଲା ।

ତା’ ପରେ କହିଲା, କଥା କହିବାର ଚମତ୍କାରିତା ସତରେ ଅଛି ।

ଆଚ୍ଛା ଆବାସୀ, ତମେ କାଲିକ ରୁହ । ଅରଣ୍ୟ ଦେଖିବ । ଘନ ଅରଣ୍ୟର ଅନେକ ଭୀମକାନ୍ତ ରୂପ ଅଛି । ଯାହାକି ବାହାରୁ ଦେଖି ଜାଣି ହୁଏ ନାହିଁ ।

ଏଠାରେ ପୁଣି ଦେଖିବା ପରି କ’ଣ ଅଛି ? ମୁଁ ସଳଖି ବସିଲି ।

ଦେଖିବା ପରି କ’ଣ କେଉଁଠି କିଛି ଥାଏ ? ସବୁ କିଛି ଦେଖି ନେବାକୁ ହୁଏ !

ବାଃ ! ଚମତ୍କାର କଥା ତ !

ମନୋରମକୁ କହିଲି, ଆଚ୍ଛା କୁହ । କି କି ଭୀମକାନ୍ତ ରୂପ ତମେ ଦେଖିଛ । ଗୋଟାଏ କହିଲ, ଶୁଣିବା ।

ଉତ୍ସାହିତ ହୋଇ ସେ କହିଲା, ଏଠାରୁ ପ୍ରାୟ ଷାଠିଏ ସତୁରି କିଲୋମିଟର ଦୂରରେ ପାହାଡ଼ ଉପରେ ଝରଣାଟିଏ ଅଛି । ସେହି ଝରଣା ପର୍ବତ ଚୀଖରୁ ବାହାରିଛି ।

ପାର୍କ ସବୁରେ ଯେମିତି ଫୁଆରା ସବୁ – ଅନେକଟା ସେମିତି, କିନ୍ତୁ ପାର୍କ ଫୁଆରା ପରି ନୁହେଁ । ବହୁତ ମୋଟା ଓ ସୁନ୍ଦର ।

ପାଣିଟା ଯେଉଁଠୁ ବାହାରୁଛି ସେହି ପଥରଟା ଗୋଟାଏ ଭୟଙ୍କରିଆ ମୁହଁ ପରି ଜଣାଯାଏ । ସେଇ ପାଟି ମେଲାକରି ଆଁ କରିଥିବା ମୁହଁ, ଓଠ – ଦେଖିବା ଭଳି ଚିଜଟିଏ ।

ପଦାର୍ଥଟିଏ । ଦୃଶ୍ୟଟିଏ ।

ପର୍ବତ-ଚୀଖରୁ, ସେଇ ଭୟଙ୍କରିଆ ପଥର ପାଟିର ପାଣିଟା ବାହାରିଲା ବେଳେ ନୀଳ ଦିଶେ ।

ଆଦିବାସୀମାନଙ୍କ ପ୍ରବାଦାନୁସାରେ ସେ ମୁହଁଟା ପ୍ରକୃତରେ ଗୋଟାଏ ଅସୁରର ମୁହଁ ।

ଅସୁରର ଦେହଟା ପାହାଡ଼ ଭିତରେ ପଶି ଯାଇଛି ।

ଆଦିବାସୀମାନଙ୍କ ଝାଙ୍କର ଦେବତା ପାହାଡ଼ ଚୀଖରେ ସେଇ ଅସୁରକୁ ପୋତି ଦେଲା ପରି ପୋତି ଦେଇଛି ।

ତା' ଦେହଟା ପାହାଡ଼ ଭିତରେ ଓ ମୁହଁଟା ବାହାରେ ଅଛି ।

ତା' ପାଟିରୁ ଯେଉଁ ନୀଳପାଣି ବାହାରୁଛି ସେଇ ନୀଳ ପାଣିକି ଯିଏ ଛୁଇଁ ଦେବ ତା'ର ମୃତ୍ୟୁ ସୁନିଶ୍ଚିତ !

ଶହେ ଆଠଜଣ ମୃତ୍ୟୁବରଣ କରି ସାରିଲେ, ସେ ଅସୁର ମୋକ୍ଷ ହେବ । ସମସ୍ତେ କହୁଛନ୍ତି, ଶହେ ସାତ ଜଣ ମଲେଣି ।

ମୁଁ କ'ଣ ଭାବିଛି ଜାଣ ? କହିବି ?

ମନୋରମ ମତେ ଚାହିଁ ହସୁଥାଏ ।

ମୁଁ ତା' ମୁହଁକୁ ଚାହିଁଥିଲି ।

ମୁଁ ଭାବିଛି, ମୁଁ ସେ ନୀଳ - ଜଳକୁ ଛୁଇଁବି । ଅସୁରକୁ ମୁକ୍ତି ଦେବି ।

ତମେ ଭାବତ ଆବାସୀ, କ୍ଷୁଧା ପୀଡ଼ିତ ଅସୁରଟା କ୍ଷୁଧା - ଦାଉରେ ହଳଦୀ - କିଆରି, ମାଣ୍ଡିଆ - କିଆରି, ଆଖୁ କ୍ଷେତକୁ ନଷ୍ଟ କଲା ବୋଲି, ପୋକ ଲଗେଇଲା ବୋଲି, ଝଙ୍କର ଦେବତା ତାକୁ ପଥର କରିଦେଲେ ।

ପଥର କଲେ ତ କଲେ । ହେଲେ ପାହାଡ଼ ଉପରେ ତାକୁ ପୋତି, ତା' ପାଟି ପାଣିକି ବିଷାକ୍ତ କରି, ଶହେ ଆଠ ମଣିଷ ମରିସାରିବା ପରେ ତା'ର ମୋକ୍ଷ ହେବା ବିଧାନ ରଖିବା ଅଧିକ ମର୍ମନ୍ତୁଦ ନୁହେଁ କି ? ମୁଁ ତାକୁ ନିଶ୍ଚୟ ମୁକ୍ତି ଦେବି । ନିଶ୍ଚୟ ।

ପ୍ରବଳ ଭାବରେ ମୁଣ୍ଡ ହଲେଇ, ମୁଁ ଚିତ୍କାର କରି କହିଲି । ତମର ଏତେ ବାହାଦୁରି ଦେଖେଇବା ଦରକାର ନାହିଁ । ଜଙ୍ଗଲ ପାହାଡ଼ ବୁଲି ବୁଲି ଏଇଆ ହେଉଛି ନା ? ରୁହ ରୁହ । ମିସେସ୍‌କୁ ଏସବୁ କଥା ଜଣେଇ ମୁଁ ଚିଠି ଲେଖିବି । ପାଇବ କେଞ୍ଚାଏ । ମୁକ୍ତି - ଫୁକ୍ତି ହୋଇଯିବ ।

ହୋ' ହୋ' ହୋଇ ହସିଲା ମନୋରମ ।

କହିଲା, ଅଦେଖା ମିସେସ୍‌ଙ୍କ କଥା ଛାଡ । ଯାହାକୁ ଦେଖି ନାହିଁ ତା' ଉପରେ ଭରସା ରଖିବା ଉଚିତ୍ ନୁହେଁ । ତେଣୁ ତମେ ତମ କଥା କୁହ । କୁହ ତ, ମୁଁ ଯଦି ସେହି ନୀଳ - ଜଳ ଛୁଇଁ ମରିଯାଏ ! ତମର କ'ଣ ଯିବ ?

ସତରେ କ'ଣ, ତମର କ'ଣ ଯିବ ???

ତା' ପରେ ଅଦ୍ଭୁତ ଭାବରେ ମୋ ପାଖକୁ ମୁଣ୍ଡ ନୁଆଁଇ ଆଣି କଣ୍ଠସ୍ୱରକୁ ଈଷତ୍ କମେଇ କହିଲା, ସତରେ କ'ଣ କିଛି ଯିବ ?

ଅକାରଣ ଲଜ୍ଜା ମତେ ଯେମିତି ଜାବୁଡ଼ି ଧରିଲା !

ଧେତ୍ କହି, ମୁଁ ତଳକୁ ମୁହଁ ପୋତି ଦେଲି ।

ଟିକିଏ ପରେ ଚାହିଁ ଦେଖେ ତ ମନୋରମ ମତେ କେମିତିଆ ଅନ୍ୟ ଦୃଷ୍ଟିରେ ଚାହିଁଛି । ଯେମିତି କି ସେ ମୋ' ଭିତରଟାକୁ ଦେଖିବାକୁ ଚେଷ୍ଟା କରୁଛି ।

ମୁଁ କୌତୁକ କଲି ।

ମୋ ରାଜ୍ୟରୁ ଜଣେ ସୁରସିକ, ଦକ୍ଷ ଅଫିସର କମିଯିବେ । ଏହି କଥା କରିବାକୁ ମୁଁ ଦେବି ନାହିଁ । ଆଉ ତମେ ପଚାରୁଛ, ମୋର କ'ଣ ଯିବ !

ତମ ରାଜ୍ୟରୁ ? ସତେ ?

ଆଃ ! ମୋର କି ଭାଗ୍ୟ !

ତା' ହେଲେ ମୁଁ ଆଉ ତାକୁ ଛୁଇଁବି ନାହିଁ । କଦାଚିତ୍ ଛୁଇଁବି ନାହିଁ ।

କାଲି ରହୁଛ ଟି ? - ସେ ପରିହାସ କଲା ।

ତା' କଥାର ମର୍ମ ମତେ ଛୁଇଁଲା ।

ଆଉ କ'ଣ ଦେଖିବାର ଅଛି ? ତା' କଥା ନଶୁଣିବା ଭଳି ମୁଁ ସେମିତି କୌତୁକ କଲା ପରି ହିଁ କହିଲି ।

ମନୋରମ ଆଗ୍ରହରେ କହିଲା, ଡାହାଣୀ ଗଛ ଅଛି । ପ୍ରତି ରାତିରେ ସେହି ଗଛ ଗଣ୍ଡି ଭିତରୁ ନାରୀ କଣ୍ଠର କାନ୍ଦ ଶୁଭେ ।

ମୁଁ ହସିଲି । କହିଲି, ନାରୀ କି ଛାଡ଼ିଦେଲେ ଘଟଣା କୁହ କି ଦୁର୍ଘଟଣା କୁହ କି ଅଜବ୍ ବ୍ୟାପାର କୁହ, କିଛି ତ ଘଟେ ନାହିଁ ।

ମନୋରମ ହାତ ହଲେଇ କହିଲା, ମିଛ ଭାବୁଛ ? ମିଛ ନୁହେଁ । ପୋକାଳକୁ ପଚାରି ବୁଝିନେବ ।

ନା, ମିଛ ଭାବୁନାହିଁ । କାହାରିକୁ ପଚାରିବା ବି ଦରକାର ନାହିଁ । ତମେ କୁହ ।

ସେ ହସି ହସି କହିବା ଆରମ୍ଭ କଲା ।

ବହୁବର୍ଷ ତଳର କଥା । ଲୋକେ ଏଇ ଜଙ୍ଗଲ ବାଟରେ ସମ୍ବଲପୁରକୁ, ବିହାରକୁ ଯିବା ଆସିବା କରୁଥିଲେ । ଏହି ବାଟ ସର୍ଟକଟ୍ ଥିଲା ।

ସେତେବେଳେ ନବାବ୍ ଥିଲା ତର୍କୀ ଖାଁ । ଡକାୟତି ଯେପରି ହେଉଥିଲା ଅତ୍ୟାଚାର ମଧ୍ୟ ସେପରି ଚାଲିଥିଲା । ତା' ବ୍ୟତୀତ ପଥିକ ମାନଙ୍କଠାରୁ, ତୀର୍ଥଯାତ୍ରୀ

ମାନଙ୍କ ଠାରୁ ଟଙ୍କା ସୁନା ଛଡ଼େଇ ନେବା ତ ଜାଣି ଯୁଗେ ଯୁଗେ ରହିଛି । ଖାଲିଯେ ଅତ୍ୟାଚାର, ହତ୍ୟା,ଡକାୟତି ହେଉଥିଲା, ତା' ନୁହେଁ । ଗୁଣି ଗାରେଡ଼ି ମଧ୍ୟ ଥିଲା । ପ୍ରବଳ ଗୁଣି ଗାରେଡ଼ି । ବାଘ, ସାପଠାରୁ ଗୁଣି ଗାରେଡ଼ିଆମାନଙ୍କୁ ଲୋକେ ଅଧିକ ଭୟ କରୁଥିଲେ । ଏହା ସେହି ସମୟର କଥା । ଜଣେ ଗୁଣିଆ ଓ ଗୋଟିଏ ଡକାୟତ ମିତ ବସିଥାନ୍ତି । ଦୁହେଁ ଭାରି ସାଙ୍ଗ । ଦିନରାତି ବାଟ କଡ଼ରେ ଦୁହେଁ ବସିଥାନ୍ତି । ଡକାୟତଟି ବାଟୋଇଙ୍କୁ ଚାହିଁଥାଏ ।

ଗୁଣିଆଟି ତା' ଗୁଣି ଗାରେଡ଼ି ସାଧନରେ ଲାଗିଥାଏ । ବାଦୁଡ଼ି ଦୁଧରେ ସାପହାଡ଼କୁ ଘୋରି ଦବେଇ ବନଉଥାଏ ।

ସେଇଟା କେଉଁ ଗୋଟାଏ ପୂର୍ଣ୍ଣିମାର ରାତି ଥିଲା । ଦୁହେଁ ଯାକ ସାଙ୍ଗ ହୋଇ ରାସ୍ତା କଡ଼ରେ ବସିଛନ୍ତି ।

ଦୁଧ ଇଡ଼ି ଗଲାପରି ଜହ୍ନ ରାତି । ଗୁଣିଆ ଜଣଙ୍କ ଆକାଶ ଆଡକୁ ଚାହିଁ ଥାଏ ।

ହଠାତ୍ ଗୋଟାଏ ସାଇଁ.......ସା.......ଇଁ ..........ଶବ୍ଦ ହେଲା ।

ଦଳବଦ୍ଧ ପକ୍ଷୀକୁଳ ଉଡ଼ିଗଲା ବେଳେ ଯେମିତି ଶବ୍ଦ ହୁଏ ସେମିତି ।

ତା'ପରେ ଦେଖାଗଲା, ଛୋଟ ପାହାଡ଼ଟିଏ ଚଢ଼େଇଟେ ପରି ଉଡ଼ିଯାଉଛି ।

ଗୁଣିଆ ଜଣକ କହିଲା, ଦେଖ୍ ଦେଖ୍ ମିତ, କ'ଣ ଉଡ଼ିଯାଉଛି କହ ତ ?

ଶବ୍ଦ ଶୁଣି ଡକାୟତଟି କାନେଇଥିଲା ।

ମିତ କଥାରେ ଆକାଶକୁ ଚାହିଁ କହିଲା, ମୋ ବୋପାଲୋ, ଏଇଟା କି ଚଢ଼େଇ ?

ଏତେ ବଡ଼ ଚଢ଼େଇ ମୁଁ ଦେଖି ନଥିଲି ।

ଚଢ଼େଇ ନୁହେଁ ବେ । ଡାହାଣୀ - ଡାହାଣୀ ଗଛ ଚଢ଼ି ଉଡ଼ି ଯାଉଛି ।

ଧେତ୍ ! ମିଛ କଥା । ତୋର ତ ମିତ ସବୁକଥାରେ ଡାହାଣୀ, ଡାହାଣା,ଚିରୁଗୁଣୀ,ଭୂତ, ଭୂତୁଣୀ, ପ୍ରେତ-ପେତେନୀ । ଖାଲି ଏଇ କଥା !

ଏଇଟା ଗୋଟାଏ ଗଣ୍ଡ ଭୈରବ ଚଢ଼େଇ ହେବ ପରା !

କିନ୍ତୁ ଗୁଣିଆ ଜଣକ ତା' କଥାକୁ ମିତ ଏମିତି ହସରେ ଉଡ଼େଇ ଦେବାର ଦେଖି କହିଲା, ଦେଖିବୁ ରହ । ମିଛ କି ସତ । ଦେଖ୍ - ଦେଖ୍ ।

ଗୁଣିଆଟି ଉପରକୁ ଡାହାଣ ହାତ ଟେକି ବିଶିଆଙ୍ଗୁଠିରେ ଗୋଟାଏ '୦' ପରି ଗୋଲ କଲା ଭଳି ଗୋଲେଇ କରି, ଗାର କାଟି, ମୁଣ୍ଡକି ବୁଲେଇ ଦେଲା ।

ତା'ପରେ ମନ୍ତ୍ର ଆବୃତ୍ତି କଲା ।

ତା'ର ତ ଗୁଣି ଗାରେଡ଼ିରେ ସିଦ୍ଧି ଲାଭ ହୋଇ ସାରିଥାଏ । ଗୁଣି ଗାରେଡି କରି ଲୋକଙ୍କୁ ମୂକ, ପାଗଳ କରି ଦେଇ ପାରୁଥିଲା ।

ଏମିତିକି ଜୀବନରୁ ମାରି ବି ଦେଉଥିଲା । ସେ ଥିଲା ଗୁଣିରାଜ । ସମସ୍ତେ ତାକୁ ଗୁଣିରାଜ ବୋଲି ହିଁ ସମ୍ବୋଧନ କରୁଥିଲେ । କହୁଥିଲେ—

ଯେମିତି ସେ ମନ୍ତ୍ର ଆବୃତ୍ତି କରି ମୁଣ୍ଡକି ବୁଲେଇ ଦେଇଛି, ଅଦ୍‌ଭୁତ କାଣ୍ଡ ଘଟିଲା ।

ଆକାଶରେ ମେଘ ଖଣ୍ଡ ପରି ପାହାଡ଼ଟା ଚାଲିଥିଲା ।

ଏଥର କିନ୍ତୁ ଜେଟ୍ ବିମାନ ପରି ସେଇଠି ଘୂରିଗଲା । ଆଉ ଧୀରେ ଧୀରେ ତଳକୁ ଖସିଲା ।

ଗଛଟା ମାଟିରେ ପୋତିହୋଇ ଠିଆ ହୋଇଗଲା ।

ଗଛଡାଳରେ ସମ୍ପୂର୍ଣ୍ଣ ନଗ୍ନ ନାରୀଟିଏ ଜାକି ଜୁକି ହୋଇ ବସିଥିଲା ।

ଗଛଟା ମାଟିରେ ପୋତି ହୋଇ ଠିଆହୋଇଯିବା ମାତ୍ରକେ ନାରୀଟି ଦୁଇହାତ ବଢ଼େଇ କହିଲା, ଯାହା ତ କଲ କଲ । ଦିଅ- । ମୁଣ୍ଡରେ ବାନ୍ଧିଥିବା ଗାମୁଛାଟାକୁ ଏଥର ପକେଇ ଦିଅ । ତା' ନହେଲେ ମୁଁ ଏଠାରୁ ଓହ୍ଲେଇବି କେମିତି.!

ଗୁଣିଆ ଆଖି ମିଟି ମିଟି କରି ହସୁଥାଏ ।

ତକାୟତ ଜଣକ ଗୁଣିଆ ମୁଣ୍ଡରେ ବାନ୍ଧିଥିବା ଗାମୁଛାଟାକୁ ଟାଣିନେଇ, ସେ ନାରୀ ଉପରକୁ ଫୋପାଡ଼ି ଦେଇ କହିଲା, ନିଅ । ଶୀଘ୍ର ପିନ୍ଧ ।

ଏ କଥାଟା ପଲକ ମାତ୍ରକେ ଘଟିଗଲା ।

ଗୁଣିଆ ଜଣକ ସାଙ୍ଗେ ସାଙ୍ଗେ ଚିତ୍କାର କରି ଉଠିଲା, କ'ଣ କଲୁରେ ଚଣ୍ଡାଳ ! ସାରିଦେଲୁ । ସାରିଦେଲୁ ।

କିନ୍ତୁ ସେତେବେଳକୁ କରିବା ପାଇଁ ଆଉ କିଛି ନଥିଲା ।

ଡାହାଣୀ ସେଇ ଗାମୁଛାର ଗୋଟାଏ ପାଖ ଧରି ଶୂନ୍ୟରେ ତିନିଥର ବୁଲେଇ, ଦୁଇହାତରେ ପୁଳାଟାଏ କଲା । ବଲ୍ ଫୋପାଡ଼ି ମାରିଲା ପରି ଖୁବ୍ ଜୋରରେ ମାଟି

ଉପରକୁ ଫୋପାଡ଼ି ଦେଲା । ଆଉ ସାଙ୍ଗେ ସାଙ୍ଗେ ଗୁଣିଆର ଆର୍ତ୍ତ ଚିତ୍କାରରେ ଅରଣ୍ୟର ନିର୍ଜନତା, ଆକାଶର ଶୂନ୍ୟତା ଦୁଇଭାଗ ହୋଇଗଲା ।

ଧନୁପରି ବଙ୍କା ହୋଇ ଯାଉଯାଉ ସେ କହିଲା, ଏ'ତୁ କ'ଣ କଲୁ ପିଡେଇ ! ଓଃ ! ହୋଃ !

ଟା'ପରେ ସେ ମାଉଁସ ମେଣ୍ଟାଟାଏ ହୋଇଗଲା ।

କହିବା ବାହୁଲ୍ୟ, ଏସବୁ ଦୃଶ୍ୟ ଦେଖି ଡକାୟତ ଜଣକ ରକ୍ତ ବାନ୍ତି କରି ସାରିଥିଲା । ନିଶ୍ଚଳ ହୋଇ ପଡ଼ି ସାରିଥିଲା ।

ଡାହାଣୀ ନିଜ ନାଆଁ ଶୁଣି ଚମକି ପଡ଼ି ଗଛରୁ ଓହ୍ଲେଇ ଆସିଲା ।

ହେଲେ ସେତେବେଳକୁ ସବୁ ଶେଷ ହୋଇ ଯାଇଥିଲା ।

ଗୁଣିଆ ଜଣକ ଏକଦା ଟା'ର ପ୍ରେମିକ ଥିଲା ।

ମନୋରମ ଦୀର୍ଘ ନିଃଶ୍ୱାସ ଛାଡ଼ିଲା ।

ମୁଁ କହିଲି, ଡାହାଣୀଟା ସେଇ ଗଛରେ ରହିଗଲା । ଆଉ ପ୍ରତି ରାତିରେ ବାହାରକୁ ବାହାରି କାନ୍ଦିଲା । ଦିନରେ ସେଇ ଗଛ ଗଣ୍ଡି ଭିତରେ ଗୁଣ୍ଣୁ ଗୁଣ୍ଣୁ ହୋଇ ବାହୁନି କାନ୍ଦି ଚାଲିଛି ।

ବାଧ ଛାତ୍ରଟିଏ ପରି ମନୋରମ ମୁଣ୍ଡ ଟୁଙ୍ଗାରିଲା । ଟା' ମୁହଁରେ ମଧ ସେହି ବାଧ ଭାବଟି ଥିଲା ।

ଆଚ୍ଛା, ତମେ ଏଠିକି ଆସି, ଟୁର୍‌ରେ ବିଭିନ୍ନ ଅଞ୍ଚଳକୁ ଯାଇ, ଗରିବ ଅନୁନ୍ନତ ଆଦିବାସୀଙ୍କର କିଛି ଉନ୍ନତିମୂଳକ କାମ କରୁଛ ନା ଏଇ ସବୁ ଗୁଣିଗାରେଡ଼ି, ଅସୁର, ରାକ୍ଷସମାନଙ୍କର ସନ୍ଧାନରେ ବୁଲୁଛ ?

ମୁଁ ହସ ରୋକି ପାରିଲି ନାହିଁ । ହସି ଉଠିଲି ।

ବି'ଟା ଯାକ କରୁଛି, ମାଡାମ୍ ! ଟା'ର ନିର୍ଲିପ୍ତ ଉତ୍ତର । ସେ କିନ୍ତୁ ହସିଲା ନାହିଁ ।

ଆଚ୍ଛା ଆବାସୀ, ଏସବୁ ଦେଖିବାକୁ ତମର ଇଚ୍ଛା ହେଉ ନାହିଁ ? ତମକୁ ଭଲ ଲାଗୁ ନାହିଁ ?

ଫୋକାଲ୍ ଆସି ଜଣେଇଲା, ରୋଷେଇ ସରିଯାଇଛି ।

ଖାଇବାକୁ ବଢ଼ାବଢ଼ି କରିବା ପାଇଁ କହିଲା ଓ ଉଠି ଠିଆହେଲା ମନୋରମ ।

ଖାଇବା ଟେବୁଲ୍‌ର ଦୁଇ ପାଖରେ ଆମେ ଦୁହେଁ ସାମ୍ନାସାମ୍ନି ବସିଲୁ ।

ମୁଁ କହିଲି, ତମେ ନା ମନସ୍ତତ୍ତ୍ୱର କୃତୀ ଛାତ୍ର ?

ସୁବୋଧ ବାଳକ ପରି ସେ ମୁଣ୍ଡ ଦୁଲାଇଲା । ତେବେ କେମିତି ରଚନା କଲ ରୁକ୍ଷ ମାଟିରେ ଏଇ ଶ୍ୟାମାୟନ ?

ଏଥର ଚମକିଲା ପରି ବଡ଼ ବଡ଼ ଆଖିରେ ଚାହିଁଲା ମନୋରମ । କହିଲା, ବାଃ ! ଚମତ୍କାର !

ମୁହଁକୁ ଇଷତ୍ ନୁଆଁଇ ଆଖି ମିଟି ମିଟି କଲା ।

ନିଷାଦପ ଦେଶରେ ଅଜଣା ପକ୍ଷୀ କାକଳି ପରି ତମ କଥାଗୁଡ଼ିକ ଶୁଭିଲା, ଆବାସୀ, ଆଉଥରେ କହ ତ ! ମୁଁ ମନେ ରଖିପାରିଲି ନାହିଁ ।

କଥାବାର୍ତ୍ତା ଥଟ୍ଟା ପରିହାସ ଭିତରେ ମନୋରମ ବେଳେବେଳେ କେମିତି ଗୋଟାଏ ଦୃଷ୍ଟିରେ ମତେ ଚାହୁଁଥାଏ । କ'ଣ ଯେମିତି ଲକ୍ଷ୍ୟ କରୁଥାଏ । କିଛିଗୋଟାଏ ଜାଣିବାକୁ ଯେମିତି ଚେଷ୍ଟା କରୁଥାଏ ।

ଏହା ହୁଏତ ନହୋଇ ପାରିଥାଏ ! କିନ୍ତୁ ମତେ କାହିଁ ସେମିତି ଲାଗିଲା । ଏହା ସତ ଯେ, ତା' ମୁହଁରେ ଆଖିରେ ଗୋଟାଏ ଗଭୀର ତନ୍ମୟ ଭାବ ଥିଲା ।

ଏବେ ମୁଁ ଭାବେ, ଅନେକ ଜନ୍ମର ତପସ୍ୟାର ଫଳରୁ ମୁଁ ସେହିଦିନ ତାକୁ ପାଇଥିଲି ।

ସେହି ନିଘଞ୍ଚ ବଣ ଜଙ୍ଗଲ ଭିତରର ଡାକବଙ୍ଗଳା, ସେହି ଜ୍ୟୋତ୍ସ୍ନାର୍ଚ୍ଚିତ ନିର୍ଜନ ରାତିରେ ମୁଁ ଯାହା ପାଇଛି, ସେତିକିରେ ମୋ ଜୀବନ ଧନ୍ୟ ହୋଇଯାଇଛି ଲୋ ବାଣୀ !

ସାଧାରଣତଃ ଆମମାନଙ୍କ ଜୀବନରେ ସାର୍ଥକ ମୁହୂର୍ତ୍ତଟିଏ ଆସେ ନାହିଁ । ନୁହେଁ କି ?

କିନ୍ତୁ ମୋ ଜୀବନରେ ଥରେ ସେପରି ମୁହୂର୍ତ୍ତ ଆସିଥିଲା, ମତେ ସାର୍ଥକ କରି ।

କେମିତି ଭାବରେ ତତେ କହିବି ଯେ, ସେମିତି ସାର୍ଥକ ଲଗ୍ନଟିଏ ଆସିଲେ ତାହା ଚେତନ ସ୍ତରକୁ, ଆତ୍ମା ସ୍ତରକୁ ସଞ୍ଚରିଯାଇ, ଗଭୀର ଦାଗଟିଏ କାଟିଦେଇଯାଏ । ସେଠାରେ ତର୍କ, ବୁଦ୍ଧି, ବିଦ୍ୟା, ଜ୍ଞାନ ସବୁ ତୁଚ୍ଛାତିତୁଚ୍ଛ ହୋଇଯାଏ ।

ଆବାସୀର କଣ୍ଠସ୍ୱର ଯେମିତି ଆଚ୍ଛନ୍ନ ହୋଇଗଲା । ବାଣୀ ତା' ମୁହଁକୁ ଚାହିଁଥିଲା ।

ଭାବି ଆଶ୍ଚର୍ଯ୍ୟ ହେଲା, ଏହି ବୟସରେ ଆବାସୀ ଏପରି କେଉଁ ମହାନ୍ ସତ୍ୟ-ପ୍ରେମର ସନ୍ଧାନ ପାଇଛି ? ଯେଉଁଥିପାଇଁ ତା' ମୁହଁରେ ଏପରି ଭାବଟିଏ ଫୁଟି ଉଠିଛି ! ଏକମାତ୍ର ସତ୍ୟର ସନ୍ଧାନ ନପାଇଲେ ଏପରି ଗଭୀର ସ୍ୱରରେ କେହି କଥା କହିପାରେ ନାହିଁ ।

କିଛି ସମୟ ନୀରବ ରହିବା ପରେ ସେହିପରି ଆଚ୍ଛନ୍ନ ସ୍ୱରରେ ଆବାସୀ କହିଲା, ମନେ ପଡ଼େ, ସେଦିନ ରାତିରେ ଖାଇଲାବେଳେ ଗୋଟାଏ ଟେବୁଲ୍‌ର ଦୁଇ ପାଖରେ ଦୁହେଁ କେମିତି ମୁହାଁମୁହିଁ ବସିଥିଲୁ । ମୁଁ ତାକୁ ବଳେଇ ବଳେଇ ଖୁଆଉଥିଲି ।

ସେ ହସି ହସି କହିଲା, ଖୁଆଉଛ ତ ଆବାସୀ । କିନ୍ତୁ ତା'ପରେ ଯାହା ହେଲେ ତମେ ହିଁ ଅସୁବିଧାରେ ପଡ଼ିବ ଯେ !

ମୁଁ ମଧ ହସି ହସି କହିଲି ମୁଁ ତମକୁ ଖୁଆଇବା ଦ୍ୱାରା ଯଦି ତମ ପେଟ ଖରାପ ହୁଏ ତେବେ ତ ଖୁବ୍ ଭଲ ହେବ ! କାରଣ ମୁଁ ତ ନଥିବି । ତମେ ମତେ ମନ ଭରି ଗାଳି ଦେବ... ନୁହେଁ ?

ମନୋରମ ଫେଁ କିନା ହସି ଉଠିଲା ।

ସାଙ୍ଗସାଥୀଙ୍କ କଥା ପଡ଼ିଲା । କେତେ ଆଡ଼ର କେତେ ଗପ ସେ କଲା । ମଝିରେ ମତେ କହୁଥାଏ ଏଇଟା ଖାଅ । ସେ'ଟା ଖାଅ ! ଏଇଟା ଏଠାକାର ବିଶିଷ୍ଟ ପରିବା । ଏମିତି କେତେ କଥା କହୁଥାଏ ।

କେବେ ବି ରାତିରେ ମୁଁ ବେଶୀ ଖାଏ ନାହିଁ । ସେ ମନଦୁଃଖ କଲାପରି କହିଲା, ତମେ ମତେ ବଳେଇ କରି ଖୁଆଉଛ । ଅଥଚ ମୋ କଥା ତମେ ରଖୁନାହଁ ।

ମୁଁ କହିଲି, ତମେ ମୋ କଥା ରଖ । ମୁଁ ତମ କଥା ନରଖିଲେ କିଛି ଯାଏ ଆସେ ନାହିଁ ।

ସେ ହସିଲା ।

ହଁ.... ଓଲଟା କଥା କହିବ ନାହିଁ ତ ଆଉ କ'ଣ ? ଯେତେ ହେଲେ ତମେ ମୋର ଅତିଥି । ଏଠି ମୋ ପାଖରେ ଯେତେ ସମୟ ଅଛ, ସେତେବେଳ ଯାଏ ତମ ଦାୟିତ୍ୱ ମୋର । ତମକୁ ଖାଇବାକୁ ହିଁ ହେବ ।

ତା' ସ୍ୱରରେ ଆନ୍ତରିକତାର ସ୍ପର୍ଶ ଥିଲା ।

ସେଇ ମୁହୂର୍ତ୍ତରେ ନିଜକୁ ବଡ଼ ସୁଖୀ ମନେ ହେଲା ।

ଆବାସୀ ପୁଣି ଚୁପ୍ ହୋଇଗଲା ।

କିଛି ସମୟ ପରେ ସ୍ୱାଭାବିକ ଭାବରେ କହିଲା, ରାତି ବଢ଼ିବା ସଙ୍ଗେ ସଙ୍ଗେ ଜହ୍ନ ଆଲୁଅ ଗାଢ଼ ହୋଇ ନିର୍ଜନତା ଗଭୀରତର ହେଲା । ଚତୁର୍ଦ୍ଦିଗରେ କିଏ କେଉଁଠି ନାହିଁ । ନିଜ ପାଇଁ ନିର୍ଦ୍ଦିଷ୍ଟ ଘରଟିରେ ଫୋକାଲ୍ ଅନେକବେଳୁ ଶୋଇ ପଡ଼ିଲାଣି ।

ଘରେ ମନୋରମ ଓ ମୁଁ ଦୁଇଟି ଚେୟାରରେ ବସିଥିଲୁ । ସେ ମତେ ପଚାରିଲା, ତମେ ବର୍ତ୍ତମାନ ଶୋଇବ ? ନାହିଁ କଲି ।

ପାହାଡ଼ିଆ ଅଞ୍ଚଳରେ ସଞ୍ଜ ଯେପରି ଶୀଘ୍ର ଆସେ, ରାତି ସେମିତି ଶୀଘ୍ର ନୀରବ ହୋଇପଡ଼େ ।

ମନୋରମ କହିଲା, ଆବାସୀ, ତମେ କେବେ ଗଭୀର ରାତିର ନିର୍ଦ୍ଦିଷ୍ଟ ରୂପକୁ ଦେଖିଛ ? ତା'ର ନିର୍ଦ୍ଦିଷ୍ଟ ଶବ୍ଦକୁ ଶୁଣିଛ ? ଆଜି ନଶୋଇପଡ଼ି ସେଇ ଶବ୍ଦରାଜିକୁ ଶୁଣ । ତମକୁ କେମିତି ଲାଗିବ କେଜାଣି । ମତେ କିନ୍ତୁ ଭାରି ଭଲ ଲାଗେ । ମୁଁ ସମୟ ଜାଣିପାରେ ନାହିଁ । ଥରେ ଥରେ ବସି ବସି ପାହାନ୍ତା ପହର ହୋଇଯାଏ ।

ବାଣୀ, ମୁଁ ତ ସ୍କୁଲ୍ ହତା ଭିତରେ ହଷ୍ଟେଲ୍‌ରେ ହିଁ ରୁହେ । ତେଣୁ ନିର୍ଜନତା ବା ନିଃଶବ୍ଦ ମୁହୂର୍ତ୍ତ କ'ଣ ପ୍ରକୃତରେ ମୁଁ ତାହା ଠିକ୍ ବୁଝି ନଥିଲି । ବହିରେ ଯାହା ପଢ଼ିବା କଥା ମାତ୍ର !

ମୋର ଧାରଣା, ସେମିତି ଦୁର୍ଲଭ ମୁହୂର୍ତ୍ତ ସବୁ ମୋ ପରି ଶିକ୍ଷୟିତ୍ରୀମାନଙ୍କ ଜୀବନରେ ଆସେ ନାହିଁ । ଆସିପାରେ ନାହିଁ । ସାଧାରଣତଃ ସମସ୍ତ ସମୟ ହିଁ ଶବ୍ଦମୟ । କୋଳାହଳପୂର୍ଣ୍ଣ । ଗଭୀର ରାତିରେ ନିଘୋଡ଼ ନିଦ ।

ମୁଁ କହିବାରୁ ମନୋରମ ବାରଣ୍ଡାକୁ ଆସିଲା ।

ବାରଣ୍ଡାରେ ଠିଆହୋଇ ମୁଁ ଚକିତ ହୋଇଗଲିରେ ବାଣୀ !

ଓଃ ! ରାତିର ରୂପ ଏତେ ନରମ ଓ ଏଡ଼େ ସୁନ୍ଦର !

ପବନଟା ବାସ ମହ ମହ । ପଚାରିଲି, କ'ଣ ବାସୁଛି ?

ଏଇ ଗୋଟେ ବଣୁଆ ଫୁଲ । ବଣ ପାହାଡ଼ ଅଞ୍ଚଳ ତ ! କେତେ ଗଛ, କେତେ ଫୁଲ । କିଏ ବା ଚିହ୍ନିଛି !

ଏଠି ଏକୁଟିଆ ତମେ କେମିତି ରହୁଛ ଯେ, !

ମୋ କଥା ଶୁଣି ସେ ମତେ ଚାହିଁଲା ।

ଟିକିଏ ଚାହିଁ ରହି କହିଲା, କ'ଣ ଆଉ କରାଯିବ ! ତେବେ ଅଭ୍ୟାସ ହୋଇଗଲେ କିଛି କଥା ଖରାପ ଲାଗେ ନାହିଁ । ନୁହେଁ କି ? ତେବେ ଏଇତ, ଏଇ, ତମେ ଆଜି ଅଛ । ଆଉ ଏକା କ'ଣ ?

ଏଁ ? ଏ କିପରି କଥା ! ଆଜିକ ସିନା ମୁଁ ଅଛି । ହେଲେ ଗଲାକାଲି, ପୁଣି ଆସନ୍ତାକାଲି...

ସେ କଥା ଛାଡ଼ ଆବାସୀ । ଗଲାକାଲି ଗଲାଣି । ଆସନ୍ତାକାଲି ପାଇଁ କୌଣସି ଚିନ୍ତାର କାରଣ ନାହିଁ । ଆଜି ହିଁ ଆଜି ।

ତା'ପରେ ଅନୁଚ୍ଚ ସ୍ୱରରେ କହିଲା, ତମର କିଛି ଅସୁବିଧା ହେଉ ନାହିଁ ତ ? ମାନେ... କିଛି ଅସୁବିଧା ଫିଲ୍ କରୁନାହିଁ ତ....?

କହିବା କଥା ବୋଲି କହୁଛ ନା କ'ଣ ! ପଚାରିବା କଥା ବୋଲି ପଚାରୁଛ ତ ? ମୁଁ ହସିଲି ।

ସତରେ କାହିଁକେ ତମର ଅସୁବିଧା ହେଉଥିବ । ମୁଁ ଏମିତି ଏକା ରହିଛି ତ ! ଏମିତି ନିର୍ଜନିଆ ଜୀବନଟେ ଯାପୁଛି । ଏମିତି ଏକାକୀତ୍ୱ ନୀରବିତ 'ଜୀବନଟେ' ବଞ୍ଚୁଛି ।

ତମେ କିଛି.... ତମକୁ କିଛି ଖରାପ ଲାଗୁ ନାହିଁ ତ...

ମୁଁ କଥା ଛଡ଼େଇ ନେଇ କହିଲି, କାଇଁ, ମୁଁ ଅଛି ପରା । ଆଉ ଏକା କ'ଣ ? ଏତେ କଥା କ'ଣ ?

ଦୁହେଁ ହସିଲୁ ।

ସେ ଯେମିତି ଉଚ୍ଛୁଳି ଉଠିଲା । ସ୍ନିଗ୍ଧ ଦୃଷ୍ଟିରେ ମତେ ଚାହିଁଲା । ମନକୁ ମନ ଗୁଣୁ ଗୁଣୁ ହେଲା ।

କହିଲି, ସ୍ୱାର୍ଥପର ହୁଅ ନାହିଁ । କିଏ ଜଣେ ଏଠି ଅଛି ବୋଲି ଭୁଲିଯାଅ ନାହିଁ ।

ମନୋରମ ହସିଲା । କିଏ ଜଣେ ନା ପରମ ଜନ ! କହିଲା, ଆବାସୀ, ସେହିସବୁ ଦିନ କଥାର ସୁଖବୋଧ, ସନ୍ତୁଷ୍ଟ ଭାବ ଆଜି କୁଆଡ଼େ ଗଲା ? ସେହି ଆତ୍ମସୁଖ ଆଜି ଆକାଶ କୁସୁମ ଭଳି ମନେ ହୁଏ । ନୁହେଁ ?

ସେହି ବୟସର ଅପରିପକ୍ୱତା ସେହି ସନ୍ତୁଷ୍ଟ ସୁଖବୋଧ ଏ ଜୀବନରେ ଆଉ ଥରେ ଫେରିଆସନ୍ତା ନାହିଁ ? ତୁମେ ସେଇ ଗୀତଟା ଟିକେ ଗାଅ ତ ଆବାସୀ । ସେଇ ଗୀତ ମ, 'ମୁଁ ହାରିଲି ହେଉ ଏତିକି ଗୋ ... କୁହାରିଲି ଶ୍ୟାମ ପ୍ରୀତି କି ଗୋ... ।'

ମୁଁ ଲାଜରା ହେଲି ।

ଏଇ ଗୀତଟା ଗାଇ, ଥାର୍ଡ଼ ଇୟରରେ ଗୀତରେ ମୁଁ ପ୍ରଥମ ପୁରସ୍କାର ପାଇଥିଲି । ମନୋରମ ସେ କଥାକୁ ମନେ ରଖିଛି ଦେଖି ସତରେ ମୁଁ ଚମତ୍କୃତ ହେଲି ।

କହିଲି, ଧେତ୍ ! ମୁଁ ଗୀତ ଗାଏ ନା କ'ଣ ଯେ ଗାଇବି ? ବରଂ ତମେ ଗାଅ.. 'ଆହା ମୋ ଜୀବନ ଧନୀ କିସ କରୁଥିବ ରେ.. । ଆଶା ପଲଙ୍କରେ ବସି ଭାଷା ଲେଖୁଥିବରେ ।'

ଏଁ... ତମେ ମନେ ରଖିଛ ଆବାସୀ -

ଠୋ' ଠୋ' ହସିଲା ମନୋରମ । କହିଲା, ସେ ଦିନଗୁଡ଼ିକ ଯେତେ ପଛରେ ରହିଲେ ମଧ୍ୟ ଉଜ୍ଜ୍ୱଳ ଓ ସୁନ୍ଦର । ଆଜି ଜୀବିକା ପାଖରେ ଆମେ କେମିତି ବିକି ହୋଇଯାଇଛୁ ଭାବିଲେ କେମିତି ଗୋଟାଏ ଅଶ୍ୱସ୍ତି ଲାଗୁଛି ।

ଏ ଚାକିରି ଆଉ ଭଲ ଲାଗୁନାହିଁ ଆବାସୀ ।

ଚାକିରି ଛାଡ଼ି କ'ଣ ବିଜିନେସ୍ କରିବ ? ମୁଁ ହସିଲି । ଆଜିକାଲି ସମସ୍ତେ ବିଜିନେସ୍ କରୁଛନ୍ତି ।

ନା ନା, ସେ କଥା ନୁହେଁ - ମନୋରମ ମୁଣ୍ଡ ହଲେଇଲା । ତା'ର ହାଲ୍କା କଣ୍ଠସ୍ୱର ଭାରି ହୋଇ ଯାଇଥିଲା ।

ମୁଁ କିଛି ନକହି ରାସ୍ତା ସେ ପାଖର ବିରାଟ ଗଛକୁ ଚାହିଁଥିଲି ।

ମୋ ଦୃଷ୍ଟିକୁ ଅନୁସରଣ କରି ମନୋରମ ସେହି ବିରାଟ ବନସ୍ପତିକୁ ଚାହିଁ କହିଲା, ଦେଖୁଛ ଆବାସୀ, ବନସ୍ପତିର ଅଙ୍ଗେ ଅଙ୍ଗେ ଅନ୍ଧକାର କେମିତି ଖୁନ୍ଦି ହୋଇଯାଇଛି । ତା'ରି ଭିତରେ ମସୀ କୃଷ୍ଣ ବର୍ଣ୍ଣରେ ଆଙ୍କିଦେଇ ଛବିଟିଏ ପରି କେମିତି ଠିଆହୋଇ ରହିଛି ସେହି ଶାଳ ଗଛଟା, ଦେଖୁଛ ?

ମୁଁ ତାକୁ ଚାହିଁଲି ।

ସେ ମତେ ଚାହିଁ କହିଲା, ମୋର ମନେ ହୁଏ ଆବାସୀ, ଜୀବନର ପ୍ରଥମ ବିରାଟ ସ୍ୱରୂପ ଏଇ ବନସ୍ପତି । ଆଲୁଅ ଦିଗକୁ ସହସ୍ର ଶାଖା ବିସ୍ତାରି, ନିଜକୁ ପ୍ରସାରିତ

କରି ଉର୍ଦ୍ଧ୍ୱ ଲୋକକୁ ଯେତେ ଉଠୁଛି, ସେତେ ତା' ତଳେ ଅନ୍ଧକାର ଘନ ହେଉଛି । ବିସ୍ତୃତ ହେଉଛି । ଜୀବନ ତାମସୀର ବିନାଶ ନାହିଁ ଆବାସୀ । ତା'ର ବିନାଶ ସହଜରେ ହୋଇପାରେ ନାହିଁ ।

ବଣ ଜଙ୍ଗଲରେ ବୁଲି ବୁଲି ବୈରାଗ୍ୟ ଆସିଲାଣି ପରା । ବାବାଜୀ ହେବ କି ?

ମୁଁ ପରିହାସ କଲି ସିନା, କିନ୍ତୁ ତା' କଥାଗୁଡ଼ାକ ମୋ ଭିତରେ ଚମକ ସୃଷ୍ଟି କରିଥିଲା ।

ଅଳ୍ପ ସମୟ ଠିଆ ହେବା ପରେ ଘର ଭିତରକୁ ଆସିଲୁ । ଏତେବଡ଼ ବଙ୍ଗଳାରେ ମନୋରମ ଆଉ ମୁଁ ।

କେମିତି ଗୋଟାଏ ଅଦ୍ଭୁତ ଲାଗୁଥାଏ ।

କେବେ ହେଲେ ମୁଁ ସ୍ୱପ୍ନରେ ଭାବି ନଥିଲି ଯେ, ମୋ ଜୀବନରେ ଏମିତି ଗୋଟାଏ ରାତି ଆସିବ ।

ଅଭାବିତ କଥାଟିଏ ଲେଖା ଘଟେ ବୋଲି ହିଁ ତ ଜୀବନ ଏମିତି ଚମକପ୍ରଦ ମନେ ହୁଏ । ପ୍ରତି ସକାଳ ନିତ୍ୟ ନୂତନ ଲାଗେ । ସେହି ରାତିରେ ମନୋରମ କହିଥିଲା, ସବୁଠାରୁ ଜୀବନ ହିଁ ସୁନ୍ଦର ଆବାସୀ । ଜୀବନ ହିଁ ବଡ଼ । ଜୀବନ ପରି ମଧୁମୟ ଆଉ କିଛି ବି ନାହିଁ । କାହାପାଇଁ ବା କେଉଁଥିପାଇଁ ଜୀବନ ନୁହେଁ ।

ଜୀବନ ପାଇଁ ହିଁ ଜୀବନ ।

ଜୀବନ ପାଇଁ ହିଁ ଅନ୍ୟ ସବୁର ପ୍ରୟୋଜନ ।

ଅନ୍ୟସବୁ ଭିତରେ ନିଜକୁ ଚିହ୍ନିବା, ନିଜକୁ ଜାଣିବା, ନିଜକୁ ସରସ-ସୁନ୍ଦର କରିନେବା ହିଁ ତ ଜୀବନକୁ ସମ୍ମାନିତ କରିବା ।

ବାଣୀରେ, ସେହି ରାତିରେ ଅନେକ କଥା ମନୋରମ ମତେ କହିଥିଲା । ସେ ଯେତେ କଥା କହିଥିଲା, ତା'ଠାରୁ ଲକ୍ଷେ ଗୁଣ ମୋର ଅନୁଭବରେ ଆସିଥିଲା ।

ସେ ଯାହା ଯାହା କହିଥିଲା, ସେସବୁ ତ ଗୋଟି ଗୋଟି କରି ତତେ ମୁଁ କହିପାରିବି ନାହିଁ । ଯଦିଓ ସେସବୁ ମୋ ମନରେ ସ୍ପଷ୍ଟ ଭାବରେ ହିଁ ଲେଖିହୋଇ ରହିଛି । କିନ୍ତୁ କହିବି କେମିତି ? ମୁଁ ତ ସେ ଶକ୍ତିର ଅଧିକାରିଣୀ ନୁହେଁରେ । ଈଶ୍ୱର ସେ ଶକ୍ତି ମତେ ଦେଇ ନାହାନ୍ତି । ସେ ଶକ୍ତି ପାଇଥିଲେ ମୁଁ ହୁଏତ ସଚେତନ ହୋଇ

ପାରିଥାନ୍ତି । ହାତରୁ ପକେଇଦେଇ ସାରିଥିବା ଟେକୋଟିଏ ପାଇଁ ମନରେ ଆଜି ଏମିତି ବ୍ୟାକୁଳତା ଆସୁ ନଥାନ୍ତା ।

ଆବାସୀ ଦୀର୍ଘ ନିଃଶ୍ୱାସ ଛାଡ଼ିଲା ।

ବେଶ୍, ଅନେକ ସମୟ ବିତିଗଲା ।

କେମିତି ଗୋଟାଏ ଅଲଗା ସ୍ୱରରେ ଆବାସୀ କହିଲା, ମନେ ଅଛିରେ ବାଣୀ, ମନୋରମ କହିଥିଲା, ଏ ସଂସାରରେ ଦୁଃଖ, କଷ୍ଟ, ଯନ୍ତ୍ରଣା, ଦହନ, ଅଭାବ ବୋଧ ହିଁ ବେଶୀ ଆବାସୀ । ଏହା ସତ୍ତ୍ୱେ ମଣିଷକୁ ଆନନ୍ଦର ସନ୍ଧାନ ନେବାକୁ ପଡ଼ିବ । ଆନନ୍ଦକୁ ପାଇବାକୁ ହେବ । ଅତି ଅସହଜ ଭିତରେ ସେହି ସହଜ ଆନନ୍ଦ ଟିକିକ ମିଳିଯାଏ । କେବଳ ପାଇବାର କାଇଦା ଟିକକ ଜାଣିନେଇ ପାରିଲେ ହେଲା ।

ଦେଖ ତ ବାଣୀ, ମୁଁ ଏତେ ମୂର୍ଖ ଯେ, ସେତେବେଳେ ମୁଁ ତାକୁ କିଛି ପଚାରି ପାରିଲି ନାହିଁ । ଏବେ ଭାବୁଛି, ଭାବି ହେଉଛି । ତାହା ବା ପାଇବି କେମିତି !

ରାତି ଗଭୀରରୁ ଗଭୀରତର ହେଲା ।

ଆକାଶ ଦେଖାଯାଉଥାଏ । ଅଦୃଶ୍ୟ ହାତଟିଏ ଯେପରି ଆକାଶକୁ ଧୋଇ ପୋଛି ନିର୍ମଳ କରି ଦେଇଛି । ଜହ୍ନଟା ଆହୁରି ସଫେଦ୍ ଦିଶୁଥିଲା ଓ ତା'ର କିରଣ ଆହୁରି ଗାଢ଼ ହୋଇ ଯାଇଥିଲା । ବରଫ ବର୍ଷା ପରି ଝୁରାଝୁରା ଜ୍ୟୋସ୍ନା ଯେମିତି ବର୍ଷା ହେଉଥିଲା । ପବନ ଥଣ୍ଡା ହୋଇସାରି, ଦେହକୁ ଶୀତଳ କରି ଦେଉଥିଲା ।

ଆମେ ଘର ଭିତରକୁ ଆସିଲୁ ।

ଦୁଇଟି ଚେୟାରରେ ସାମ୍ନାସାମ୍ନି ଦୁହେଁ ବସିଲୁ । ଟେବୁଲ୍ ଉପରେ ଲଣ୍ଠନ ଜଳୁଥିଲା । ତା'ର ଆଲୋକକୁ କମେଇ, ତଳେ ଥୋଇଦେଲା ସେ ।

ତା'ପରେ କହିଲା, ଏଥର ତମ କଥା କିଛି କହ, ଆବାସୀ । ଏକ୍‌ଦମ୍ ଚୁପ୍ ହୋଇଯାଉଛ ଯେ ! ଏମିତି ଆଉ କେତେଦିନ ଯିବ ?

ମୋର ଆଉ କି କଥା ଅଛି ? ଏଇତ, ଭାସି ଭାସି ଆସି ଏଇଠି । ତମେ ବରଂ କିଛି କହ !

ମୁଁ ଆଉ କ'ଣ କହିବି ? ମୋ' ଜୀବନର ଗତି ସରଳ ଓ ମସୃଣ ନୁହେଁ । ଜୀବନ ଏମିତି ବିତିଯାଉଛି, ଶାନ୍ତ ସ୍ୱାଭାବିକ ଭାବରେ ସେ କହିଲା ।

ହସିଲି । - କାହା ଜୀବନର ଗତି ସରଳ ଯେ ? ବରଂ ଦେଖିବାକୁ ଗଲେ ତମର ଭୋଗ ଓ ସୁଖ ଅଧିକ ।

ହଁ, ନକହିବ କାହିଁକି । କିଏ କାହାକୁ ଚିହ୍ନେ । କିଏ ବା କାହାକୁ ବୁଝେ ! ସମସ୍ତେ ଅନ୍ୟକୁ ସୁଖୀ ଭାବି ନିଅନ୍ତି । ତମେ ଯେମିତି ମତେ ଭାବି ନେଉଛ । କେବଳ ତ ତମେ ନୁହଁ । ସମସ୍ତେ ହିଁ ଉପରଟାକୁ ଦେଖି ଭାବିଥାନ୍ତି ସ୍ୱାଭାବିକ । ମୋର ଏଇ ଜନପ୍ରିୟତା ମୋର ସୌଭାଗ୍ୟ । ସମସ୍ତଙ୍କ ପାଖରେ ଅଦେଖା ପରୀ କଥା ପରି । ଅଥଚ ମୁଁ ଜାଣେ ମୁଁ କ'ଣ !

ତମେ କ'ଣ ? କହ, ତମେ କ'ଣ - ମୁଁ ଦାବି କଲା ପରି ପଚାରିଲି ।

ମୁଁ କ'ଣ ତମେ ଜାଣ । ଏସବୁ ଜଟିଳ କଥା ଆବାସୀ । ଏସବୁ ସମାଧାନ ହୋଇପାରେ ନାହିଁ । ତେଣୁ ସେସବୁ କଥା କ'ଣ କହିହେବ ! ମୁଁ ଯଦି କହିବି 'ତମେ କ'ଣ' - ସେ କଥା ତମେ କ'ଣ କହିପାରିବ ? ଉପରଟା ସିନା ଦେଖାଯାଏ । କିଛି କହିଦେଇ ହୁଏ । ଭିତରଟା ତ ଦେଖାଯାଏ ନାହିଁ । ତମେ ମଧ୍ୟ ଭଲ କରି ଜାଣ, ତାକୁ କେହି ବୁଝନ୍ତି ନାହିଁ । ବୁଝିବାକୁ ଚାହାନ୍ତି ବି ନାହିଁ । ଆଉ ବି କେବେ କଦାଚିତ୍ ବୁଝି ମଧ୍ୟ ନବୁଝିଲା ପରି ଏଡ଼ାଇ ରହନ୍ତି ।

ତା' କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି ।

ଆଜି ଯାଏ ମୁଁ ଯେଉଁ ମନୋରମକୁ ଦେଖିଥିଲି, ଚିହ୍ନିଥିଲି, ଏ ମନୋରମ ଯେମିତି ସେ ନୁହେଁ । ଏ ଯେପରି ଅନ୍ୟ କିଏ ! ମୁଁ ତାକୁ ଚାହିଁଲି ।

ମନୋରମ କହିଲା, ମୁଁ ଜାଣେ, ତମେ ଆଶ୍ଚର୍ଯ୍ୟ ହେବ । ହୁଏତ ବିଶ୍ୱାସ କରିବ ନାହିଁ । କିନ୍ତୁ ତମେ ହିଁ କହ ତ ଆବାସୀ । ସତରେ କ'ଣ ଜଣେ ଅନ୍ୟ ଜଣକୁ ନିର୍ଭୁଲ୍ ଭାବରେ ଚିହ୍ନିପାରେ ନା ଦେଖିପାରେ ?

ତମ କଥା ମୋ କାନକୁ କେମିତି କେମିତି ଶୁଭୁଛି । ମୋ ମୁଣ୍ଡ କ'ଣ କରିଦେଉଛି । ତମେ ହିଁ କହତ, ଆମେ କ'ଣ ନିଜକୁ ଚିହ୍ନିପାରିଛୁ ? ଯଦି ଆମେ ନିଜକୁ ଠିକ୍ ଭାବେ ଚିହ୍ନିପାରି ନାହୁଁ, ତେବେ ନିର୍ଭୁଲ୍ ଭାବରେ ଅନ୍ୟକୁ ଚିହ୍ନିବାର ପ୍ରଶ୍ନ ଉଠୁଛି କାହିଁକି ? ଏ ପ୍ରଶ୍ନଟା ହିଁ ସେଠାରେ ନିରର୍ଥକ । ଏ ସବୁ କଥା ସତରେ ମୁଁ କିଛି ବୁଝିପାରେ ନାହିଁ । ମତେ ସବୁ ଗୋଳମାଳିଆ ଲାଗେ ।

ନା, ମୁଁ ସେ କଥା କହୁନାହିଁ ।

ଖୁବ୍ ଧୀରେ ଧୀରେ ଦି'ଥର ମୁଣ୍ଡ ହଲେଇଲା ସେ । ଆଖି ଟୋକି ମତେ ଚାହିଁଲା ।

ସେ ଆଖି ଦୁଇଟି ସତେ ଅବା ବିଷାଦ ଏକ ଗହ୍ୱରର ତାରା ।

ଜ୍ଞାନୀ ହୁଅନ୍ତୁ ବା ତପସ୍ୱୀ ହୁଅନ୍ତୁ, ଅବା ଅନ୍ୟ ଯେ କେହି ହୁଅନ୍ତୁନା କାହିଁକି, ପ୍ରଥମେ ସେ ମଣିଷ ଆବାସୀ !

ମନୋରମ କହୁ କହୁ ଅଟକିଗଲା ।

ମୁଁ ବିସ୍ମିତ ହେଲି । ପଚାରିଲି, ତମେ ଯଦିଓ ଚାକିରିକୁ ଛାଡ଼ିନାହିଁ ଚାକିରି ତ ତମକୁ ଛାଡ଼ିଦେବାର କଥା ! ଆଜିଯାଏ ତାହା ହୋଇନି କିପରି ? ଆଶ୍ଚର୍ଯ୍ୟ ।

ସ୍ମିତ ହସିଲା ସେ ।

ଠିକ୍ କହିଛ ଆବାସୀ । ତେବେ ଏଇଟା ଯଦି କୌଣସି ବେସରକାରୀ ସଂସ୍ଥା ହୋଇଥାନ୍ତା ତେବେ ଚାକିରିଟା ମତେ କେଉଁଦିନ ଠାରୁ ତଡ଼ି ସାରନ୍ତାଣି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଟିକିଏ ରହିଯାଇ ପୁଣି କହିଲା, ଏଇ ଚାକିରି ଫାକିରି ଆଉ ଆଦୌ ଭଲ ଲାଗୁନାହିଁ ଆବାସୀ । ଛାଡ଼ିଛୁଡ଼ିଦେଇ କେଉଁଆଡ଼କୁ ପଳେଇଯିବାକୁ ଇଚ୍ଛା ହେଉଛି ।

ଏଁ ! କି ଆଚମ୍ୱିତ କଥା । ଚାକିରି ମହରଗ ଯୁଗରେ ଏଡ଼େ ସୁନ୍ଦର ଆରାମପ୍ରଦ ଚାକିରିକୁ ଛାଡ଼ିଦେବା କଥା ତମେ ଭାବିପାରୁଛ ?

ମୁଁ ସତରେ ଆଶ୍ଚର୍ଯ୍ୟବୋଧ କଲି ।

ପଞ୍ଜୁରିଟା ସୁନାରେ ହେଲେ ବି ତାହା ପଞ୍ଜୁରି । ସେଥିରେ ଯିଏ ରହିବ ସେ ନିଶ୍ଚିତ ଭାବରେ ବନ୍ଦୀ ।

ତା' କଥାଟା ମୋ ଛାତିରେ ବାଜିଲା ।

ସେ କହିଲା, ଚାକିରି କରିବା ପରେ ମତେ ଏକ ଅଦ୍‌ଭୁତ ବିମର୍ଷବୋଧ ଗ୍ରାସ କରିଯାଇଛି । ଏ ଧରଣର ମାନସିକତା ସତରେ ଅସହ୍ୟ । ବଡ଼ ଚାକିରି, ବଡ଼ ଚାକିରି ବୋଲି ସମସ୍ତେ ଯାହା କହନ୍ତି ଓ ଯାହାକୁ ପାଇବା ପାଇଁ ମତେ ଏତେ କଷ୍ଟ କରିବାକୁ ପଡ଼ିଛି, ତାହା ସର୍ବଶେଷରେ ମୋ ପାଇଁ ଏକ ବିରାଟ ବୋଝ, ହତାଶା ତଥା ବିଫଳତାର ଘଟଣା ହୋଇପଡ଼ିଛି ।

ସେ ଦୀର୍ଘ ନିଃଶ୍ୱାସ ଛାଡ଼ିଲା । ମୁହଁକୁ ସାଉଁଳେଇ ନେଇ କହିଲା, ଯଦି ଅଧିକ ଦରମା, କ୍ୱାର୍ଟର୍ସ, ସାମାଜିକ ସ୍ଥିତି ଇତ୍ୟାଦି ବାହ୍ୟ ସୁବିଧାଗୁଡ଼ିକୁ ହିସାବକୁ ନିଆଯାଏ ତେବେ ହୁଏତ ମୁଁ କିଛି ହୋଇଛି । କିଛି ପାଇଛି ।

ତା' ଓଠ କଣରେ ଦୁଃଖଭରା ହସଟିଏ ଉକୁଟି ଉଠିଲା ।

ମୁଁ ସ୍ତବ୍ଧ ହୋଇ ତା' ମୁହଁକୁ ଚାହିଁଥିଲି ।

ସେ ପୂର୍ବପରି କହିଚାଲିଲା, କିନ୍ତୁ ତା' ବଦଳରେ ମୁଁ ହରେଇବସିଛି ମୋର ସ୍ୱାଧୀନତା, ନିଜ ଅନ୍ତରର ସନ୍ତୋଷଭାବ ଓ ଆହୁରି ଅନେକ କିଛି ।

ତା' ମୁହଁରେ ବିଷାଦ ବୋଳି ହୋଇଯାଇଥିଲା ।

ସାନ୍ତ୍ୱନା ଦେବା ପରି କହିଲି, ଯେଉଁ ଡିପାର୍ଟମେଣ୍ଟରେ ତମେ ରହିଛ, ସେଇଟା ତ ବହୁ କାମ କରିବା ଡିପାର୍ଟମେଣ୍ଟ । ତମେ ଅନ୍ତତଃ ଆଦିବାସୀମାନଙ୍କ ପାଇଁ, ପ୍ରକୃତ ଅନୁନ୍ନତ, ଗରିବଙ୍କ ପାଇଁ କିଛି ତ କରି...

କିଛି ବି କରିହେବ ନାହିଁ ଆବାସୀ । କିଛି ବି ନୁହେଁ । ମୋ' କଥା ଛଡ଼େଇ ନେଇ, ମନୋରମ କହି ପକେଇଲା ।

ତମେ ବା କ'ଣ ଏ ସମ୍ବନ୍ଧରେ ଜାଣିଛ ! ପକ୍ଷ ଥିଲେ ହିଁ ପକ୍ଷୀ କୁହାଯାଏ ନାହିଁ । ନୁହେଁ କି ?

ମୁଁ କହିଲି, ଦିନେ ତମେ କହିଥିଲ, ଏ ସଂସାରରେ କେବଳ ନ୍ୟାୟ-ଅନ୍ୟାୟ, ପାପ-ପୁଣ୍ୟର ବିରୋଧ ନୁହେଁ, ନ୍ୟାୟ-ନ୍ୟାୟର ବି ସଂଘର୍ଷ ହୁଏ ବୋଲି ।

ମନୋରମ କିଛି ନକହି ଝରକା ପାଖରେ ଯାଇ ଠିଆହେଲା । ବାହାରକୁ ଚାହିଁଥିଲା । ଆଖି ଆଗରେ ଜହ୍ନଆଲୁଅର ରହସ୍ୟମୟ ବନ ଭୂଇଁ । ସେ ସ୍ତବ୍ଧ ତନ୍ମୟ ହେଲାପରି ଚାହିଁଥିଲା ।

ବିସ୍ମୟରେ ଓଦା ହୋଇଯାଇଥିବା ତା' ମୁହଁକୁ, ସଙ୍କୁଚିତ ହୋଇ ବଙ୍କେଇ ଯାଇଥିବା ଦୁଇଟି ଭ୍ରୂଲତାକୁ ମୁଁ ଅପଲକ ଆଖିରେ ଚାହିଁଥିଲି । ବିସ୍ମିତ ହେଲି । ସମସ୍ତଙ୍କ ଅଲକ୍ଷ୍ୟରେ ନିଜ ଭିତରେ ଗୋଟିଏ ପାଗଳକୁ ଲାଳନ କରି, ମନୋରମ କେମିତି ଦକ୍ଷ ପ୍ରଶାସକ ହୋଇପାରିଛି ? ହୋଇପାରୁଛି ?

କ'ଣ ତା'ର ଦୁଃଖ ?

କ'ଣ ତା'ର ବେଦନାବୋଧ ?

ମୁଁ ଯେମିତି ବାଟବଣା ହୋଇ ଯାଉଥିଲି ।

ମନୋରମ ହଠାତ୍ ଉଚ୍ଛଳ କଣ୍ଠରେ ଡାକିଲା, ଆବାସୀ, ଆସ ଆସ । ଏଇଠିକି ଆସି ଦେଖ ! ଦେଖ, କିଏ ଯେପରି ଏହି ରହସ୍ୟମୟ ପ୍ରକୃତି ଭିତର ଦେଇ ଚାଲିଯାଉଛି । ତମେ ତାକୁ ଚିହ୍ନିଛ ଆବାସୀ ?

ଉଠିଯାଇ ମୁଁ ତା' ପାଖରେ ଠିଆହେଲି ।

ସେ ସେହିପରି କହିଚାଲିଥିଲା, ଦେଖ, ଆବାସୀ, ସେ କିପରି ଚାଲିଯାଉଛି । ଅଥଚ ତା'ର ଚାଲିଯିବାର କୌଣସି ଶବ୍ଦ ନାହିଁ । କେବଳ ପବନରେ ଧୂଳି ଆଉ ଶୁଖିଲା ପତ୍ର ତା' ପାଦେ ପାଦେ ଉଡ଼ିଚାଲିଛି । ତା' ପଦପାତରେ ଛନ୍ଦ କେମିତି ଅଶ୍ରୁତ-ସ୍ୱର ତୋଳୁଛି । ଶୁଣିପାରୁଛ ଆବାସୀ ?

ସେ ବିହ୍ୱଳ ହୋଇପଡ଼ିଲା । ମତେ ଚାହିଁଲା ।

ଗଭୀର ଭାବମୟତା ତା' ଆଖି ଦୁଇଟିରେ ଭରିଯାଇଥିଲା ।

ସେ ଯେମିତି ମୋ ମଧ୍ୟରେ କିଛି ଖୋଜୁଥିଲା । ମୁଁ ଠିକ୍ କହି ପାରିବି ନାହିଁ ବାଣୀ । ମତେ କିନ୍ତୁ ସେମିତି ଲାଗିଲା ।

ହଠାତ୍ ମୋ ଭିତରେ ଯେମିତି ଭୂମିକମ୍ପ ହୋଇଗଲା । ମୁଁ କମ୍ପି ଉଠିଲି । ଅବଶ ହୋଇପଡ଼ିଲି । ମୋ ସାରା ଦେହରେ ଗୋଟାଏ ତଡ଼ିତ୍-ପ୍ରବାହ ଟାଣି ହୋଇଗଲା । ତାକୁ ରୋଧ କରିବାର ଶକ୍ତି ମୋ' ଠାରେ ନଥିଲା । ସତ କହିବାକୁ ଗଲେ, ତାକୁ ରୋଧ କରିବାକୁ ମଧ୍ୟ ମୁଁ ଚାହିଁଲି ନାହିଁ । କ'ଣ କେମିତି ଘଟିଗଲା କେଜାଣି ।

ଅନନୁଭୂତ ଏକ ବ୍ୟାକୁଳତା ବୋଧରେ ମୁଁ ବୁଡ଼ି ବୁଡ଼ି ଗଲି । ଅଥବା ଗୋଟାଏ ଆବେଗ, ଯାହା ପୂର୍ବରୁ ମୋର କେବେ ଘଟି ନଥିଲା ।

ରାତ୍ରିଚର ପକ୍ଷୀଙ୍କ ଧ୍ୱନିରେ ନିର୍ଜନତା ଭାଙ୍ଗିଗଲା ।

ସେହି ଧ୍ୱନିର ପ୍ରତିକ୍ରିୟାରେ ଅହରହ ଜାଗିଥିବା କୀଟ-ପତଙ୍ଗ ମାନେ ବି ଯେପରି ଚଞ୍ଚଳ ହୋଇଉଠି, ନିଜର ଅସ୍ତିତ୍ୱ ଜାହିର କଲେ । ସେମାନଙ୍କର ମିଳିତ ରାବ ଦି'ତିନିଥର କମ୍ପିଉଠି ପୁଣି ନୀରବ ହୋଇଗଲା । କିନ୍ତୁ ସେହି ସମସ୍ତ ଧ୍ୱନି ଜଳତରଙ୍ଗ ପରି ତରଙ୍ଗାୟିତ ହୋଇଉଠିଲା ଓ ନିର୍ଜନତାର ପ୍ରଶସ୍ତ ଅଗଣାରେ ଢେଉ ଭାଙ୍ଗିଗଲା ।

ଯେତେ ସମୟ ସେହି ଶବ୍ଦ ଶୁଭିଲା, ମନୋରମ ଏକାଗ୍ର ଓ ଉନ୍ମୁଖ ହୋଇ ତାକୁ ଶୁଣୁଥିଲା ।

ମତେ କିନ୍ତୁ ଖୁବ୍ ଡର ମାଡୁଥିଲା । ଜଙ୍ଗଲ ଭିତର ଡାକବଙ୍ଗଳାରେ ରାତି ! ଗଧିଆ, ହେଟା, ବିଲୁଆ, ଭାଲୁ ଓ ଆଉ କେତେ ନାଁ ଅଜଣା ଜୀବ-ଜନ୍ତୁ, କୀଟ-ପତଙ୍ଗଙ୍କ ଧ୍ୱନି ମୁଁ କେବେ ଶୁଣି ନଥିଲି ।

କହି ପକେଇଲି, ମତେ ଡର ମାଡୁଛି ।

ହସିଲା ସେ । କହିଲା, ଡରୁଛ କାହିଁକି ? ଡର ଗୋଟାଏ କ'ଣ !

ବାଘ ବାହାରିଲା ବୋଧହୁଏ । ସେଇଥିପାଇଁ ଚଢ଼େଇମାନେ ବୋବେଇଲେ । ବଣ-ପଶୁମାନେ ରଡ଼ି କଲେ । ଜାଣିଲ ନା, ମୁଁ ଶୁଣିଥିଲି, ବାଘ ବାହାରିଲେ ପକ୍ଷୀମାନେ ବୋବାନ୍ତି । ମାଙ୍କଡ଼ ଦଳ ରଡ଼ି କରନ୍ତି ।

ହସି ଉଠିଲା ମନୋରମ ।

ହସୁ ହସୁ କହିଲା, ଆବାସୀ, ତମେ ଆଉ ହବ ନାହିଁ । କିହୋ, ବାଘ ଏଠିକି ଆସିବ କେମିତି ?

ତା'ପରେ ପୁଣି ହସିଲା । ବୁଝିଲ, ଏଠିକି ବାଘ ଆସେ ନାହିଁ । ଚାଲ, ତୁମେ ଶୋଇପଡ଼ିବ ଚାଲ । କିଛି ଭୟ ନାହିଁ । ତମେ ଏଇ ବିଛଣାରେ ଶୋଇପଡ଼ । ଏଇ ମଝି କବାଟଟା ବନ୍ଦକରି ଦିଅ । ମୁଁ ସେ ଘରେ ଶୋଇପଡ଼ିବି ।

ନା ନା । ମତେ ଡର ମାଡ଼ିବ । ମୁଁ ସତରେ ଖୁବ୍ ଭୟ ପାଇଥିଲି ।

ତା'ହେଲେ ତମେ ସେ ଘରେ ଶୁଅ । ମୁଁ ଏଠି ଶୋଉଛି ।

ଜୋର୍‌ରେ ମୁଣ୍ଡ ହଲେଇ, ନାହିଁ ନାହିଁ କରି, ମୁଁ କହିଲି, ଅସମ୍ଭବ !

ତେବେ ? ମନୋରମ ଚିନ୍ତିତ ହେଲା ।

କହିଲି, ଶୋଇବା କଥା ଛାଡ଼ । ଆଜିଟା, ମାନେ ଏ ରାତିଟା ଶୋଇବା ପାଇଁ ନୁହେଁ । ମୁଁ ଶୋଇବି ନାହିଁ କି ତମକୁ ଶୁଆଇ ଦେବି ନାହିଁ ।

ବେଶ୍ ତ ! ଭାରି ଭଲ ହେଲା ।

ଏଥର ମନୋରମ ଯେମିତି ଆଶ୍ୱସ୍ତ ହେଲା ।

ସ୍ୱସ୍ତିର ନିଃଶ୍ୱାସ ଛାଡ଼ି, ଚେୟାରରେ ବସିପଡ଼ି କହିଲା, ଏଇଠି, ଏମିତି ବସି ବସି ଏ ରାତିଟା ପାହିଯାଉ ଆବାସୀ । ତମେ ଠିକ୍ କହିଛ, ଏ ରାତିଟା ଶୋଇବା ପାଇଁ ନୁହେଁ ।

ବାଁ ହାତ ପାପୁଲିରେ ମୁହଁକୁ ରଗଡ଼ିନେଇ କହିଲା, ସବୁ ରାତିରେ ତ ଶୋଇବା ହେଉଛି, ନୁହେଁ । ଭାରି ଭଲ ହେଲା, ଆଉ ବା କେତେ ଘଣ୍ଟା ଯେ, ସେ ଘଣ୍ଟା ଦେଖିଲା ।

ପଚାରିଲା, ଚା' ପିଇବ ?

ମୁଁ ଚାରିଆଡ଼କୁ ଅନେଇ କହିଲି, ଚା ? ଏତେବେଳେ ଚା' ? କାହିଁ ?

ଫ୍ଲାସ୍କରେ ଅଛି, ଆଣୁଛି । ସେ ଉଠିଯାଇ, କାଛ ଆଲମାରିରୁ ଫ୍ଲାସ୍କ ଓ ଦୁଇଟା କପ୍ ଆଣିଲା । କପ୍‌ରେ ଚା' ଢ଼ାଳି, ମୋ ହାତକୁ ବଢ଼େଇ ଦେଇ କହିଲା, ନିଅ ।

ଚା' ପିଉ ପିଉ ସେ କହିଲା, ଏଇ ପଶୁ-ପକ୍ଷୀ, କୀଟ-ପତଙ୍ଗ ଠାରୁ ମଣିଷ କ'ଣ ହୀନ ନା ତୁଚ୍ଛ ? ଦେଖ ତ, ଏଇ ଗଭୀର ରାତିରେ ସେମାନେ କେମିତି ପ୍ରହର ଗଣି, ଧ୍ୱନି ଦେଇ, ସାରା ବିଶ୍ୱକୁ ଜଣେଇ ଦେଉଛନ୍ତି । ସତରେ ଆବାସୀ, ମତେ ଭାରି ଆଶ୍ଚର୍ଯ୍ୟ ଲାଗେ !

ମୁଁ ତା' ମୁହଁକୁ ଚାହିଁ ରହିଥିଲି । ମୋର ସନ୍ଦେହ ହେଉଥିଲା । ମନୋରମ ମଧ୍ୟରେ କ'ଣ ସୂକ୍ଷ୍ମ ବୈରାଗ୍ୟ ବୋଧଟିଏ ଜାଗି ଉଠୁଛି କି ! ତା' କଥାବାର୍ତ୍ତାରେ ବରାବର ଏମିତି ଭାବଟିଏ ରହୁଥିଲା ।

ସେ କହୁଥିଲା, ଆବାସୀ ମୁଁ ଏଇ ନିର୍ଜନ ଡାକବଙ୍ଗଳାରେ ରହେ କେବଳ ଏଇ ବିଲୁଆ, ହେଟା, ପେଚା, ବେଙ୍ଗ, ଝିଙ୍କାରିଙ୍କ ରାବ ଶୁଣିବି ବୋଲି । ବିଶ୍ୱର ଅଶ୍ରୁତ-ସ୍ୱର ଝଙ୍କାରକୁ ପ୍ରାଣରେ, ଚେତନରେ ଶୁଣିବି ବୋଲି । ଗଭୀର ରାତିରେ ତ ସମସ୍ତ ଜୀବ-ଜଗତ ଶୋଇପଡ଼ିଥାଏ । କାଳର ପ୍ରହରୀ ପରି ଏଇମାନେ ହିଁ ସଦା ଜାଗ୍ରତ ମନେ ହୁଏ । ନୁହେଁ ଆବାସୀ ?

ମୁଁ ତା' ଢ଼ୋକେ ଢ଼ୋକିନେଇ କହିଲି, ତମେ କ'ଣ କେଉଁ ବାବାଙ୍କୁ, ସ୍ୱାମୀଜୀଙ୍କୁ ଭେଟିଲଣି କି ?

ନା, ଏଯାଏ ଭେଟି ନାହିଁ ।

ତା' ମୁହଁରେ ବିଚିତ୍ର, ନିର୍ଲିପ୍ତ ହସଟିଏ ଫୁଟିଉଠିଲା ।

ସେ ନିର୍ଜନ-ଦିଗମ୍ବର-ସଫେଦ୍ ଚିକ୍ ଚିକ୍ ଆକାଶକୁ ଚାହିଁ, ଚା' ପିଇଲା ।

ବେଶ୍ କିଛି ସମୟ ଚୁପ୍‌ଚାପ୍ ବିତିଗଲା ।

ଏକ ସମୟରେ ଖୁବ୍ ଦୂରରୁ କହିଲା ପରି ମନୋରମ କହିଲା, ଆବାସୀ, ଏପରି ସାର୍ଥକ ସୁନ୍ଦର ରାତି ଜୀବନରେ କ'ଣ ଆଉ କେବେ ଆସିବ ?

ମୁଁ କିଛି କହିଲି ନାହିଁ । ଚୁପ୍‌ଚାପ୍ ବସିଲି ।

ଝରକାବାଟେ ଶୀତଳ ପବନ ପଶିଆସି ଜଣେଇ ଦେଉଥିଲା, ମୁଁ ଅଛି । ଅରଣ୍ୟର ଶ୍ୟାମଳିମାକୁ ଆଉଁସି ଦେବାକୁ ମୁଁ ଅଛି ।

ମନୋରମ ଆକାଶକୁ ଚାହିଁଥିଲା ।

ସ୍ତବ୍ଧ ନିର୍ଜନତା ମୋ ମନରେ ସୁକୋମଳ ଛାପାଟିଏ ପକେଇ ସାରିଥିଲା । ମନୋରମର ସେଇ କଥା ପଦକ, 'ଏପରି ସାର୍ଥକ ସୁନ୍ଦର ରାତି ଜୀବନରେ କ'ଣ ଆଉ କେବେ ଆସିବ ?' ଏଇ କଥାପଦକ ମତେ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରିଦେଲା । ମନେ ହେଲା, ଏଇ ମୁହୂର୍ତ୍ତ, ଏଇ ନିର୍ଜନ କୋଠରି, ମନୋରମ ଆଉ ମୁଁ.... ହିଁ ସତ୍ୟ । ଏ ବିରାଟ ବିଶ୍ୱରେ ଏତିକି ହିଁ ସତ୍ୟ !

ତନ୍ମୟ କଣ୍ଠରେ ମନୋରମ ଡାକିଲା, ଆବା...ସୀ..

ତା' ଡାକରେ କ'ଣ ଥିଲା କେଜାଣି, ମୁଁ ଥରି ଉଠିଲି । ମୋ' ଦେହରେ ବିଦ୍ୟୁତ୍ - ଝଲକଟିଏ ଚାଲିଗଲା । ତାକୁ ଚାହିଁଦେଇ ମୁଁ ତଳକୁ ଦୃଷ୍ଟି ନୁଆଁଇ ଦେଲି ।

'ସେ ସେହିପରି କହିଲା, ଆବାସୀ, ଏ ରାତିଟା ଖୁବ୍ ଚମତ୍କାର ନା ?

କହିଲି, ହଁ । ମୋ ପାଇଁ ଏପରି ମୁହୂର୍ତ୍ତ ଆଗରୁ କେବେ ଆସି ନଥିଲା ।

ମୋର ମଧ୍ୟ ।

ତା'ପରେ ସେ କହିଲା, ଜାଣିଛ ନା ଆବାସୀ, ମୁଁ ନିର୍ଜନତାର ସ୍ୱର ଶୁଣିଥିଲି । ନିର୍ଜନତାର ସ୍ୱର, ତାଳ, ଲୟର ଐକ୍ୟ ମୋର ଅନୁଭୂତି ମଧ୍ୟରେ ଗୁନ୍ଥିହୋଇ ରହିଯାଇଛି । କିନ୍ତୁ ତା'ସହିତ କେବେ ପୁଲକ ରୋମାଞ୍ଚ ମିଶି ନଥିଲା । ଏ ରାତିଟି ମୋ ପାଇଁ ଅନନ୍ୟା । ଏହା ମୋର ବିପୁଳ ପ୍ରାପ୍ତି ।

ମୁଁ ଧୀରେ ଧୀରେ ସ୍ୱଗତୋକ୍ତି କଲାପରି କହିଲି, ତମେ କିଛି କଥା କହ ।

ମୋ କଣ୍ଠସ୍ୱର ମତେ ଅଲଗା ଶୁଭିଲା । ମୋ ଗଳା ଶୁଖି ଯାଉଥିଲା । ମୁଁ ଛେପ ଢୋକିଲି ।

ମନୋରମ ଗଭୀର ସ୍ୱରରେ କହିଲା, ଏମିତି ରାତିରେ ସବୁ ଶବ୍ଦ ନିଃଶବ୍ଦ ହୋଇଯାଏ ଆବାସୀ । କେବଳ ଏଇ ନୈଶ-ଶବ୍ଦଗୁଡ଼ିକ ଧ୍ୱନିତ ହୁଏ । ପ୍ରହର ବିତିଯିବା ପରେ ତ ବି' ଥମିଯାଏ । ତା'ପରେ ସବୁ ଧୀର । ଏପରି କି କାକର ବିନ୍ଦୁ ଝରିବାର ଶବ୍ଦକୁ ବି ମନ ଶୁଣିପାରେ ଆବାସୀ । ଫୁଲ ଫୁଟିବାର ଲଗ୍ନ ଟିକକକୁ ବି ମନ ଦେଖିପାରେ ।

ସେ ନୀରବ ହେଲା ।

ଅନେକ ସମୟ ବିତିଯିବା ପରେ ସେ ଡାକିଲା ।

- ଆବାସୀ -

ଏକ ଅନାସ୍ୱାଦିତ ବିହ୍ୱଳ ମାଧୁର୍ଯ୍ୟର ଗଭୀରତାରେ ମୁଁ ଧୀରେ ଧୀରେ ମିଶିଯାଉଥିଲି । ଗୋଟିଏ ବିହ୍ୱଳ ଭାବ ପାଖରେ ମୁଁ ସମ୍ପୂର୍ଣ୍ଣ ସମର୍ପିତ ହୋଇସାରିଥିଲି ।

ସେଇ ମୁହୂର୍ତ୍ତରେ ମୋର ମନେ ହେଲା, ମତେ ଯିଏ ସମସ୍ତ ଜୀବନର ସାଧନା ଦେଇ କାମନା କରିଛି, ସେ ମୋ ସମ୍ମୁଖରେ ।

ମୁଁ ଯେମିତି ଅବଚେତନରେ କିଛି ଚାହୁଁଥିଲି ।

ଅଥଚ କ'ଣ ଚାହୁଁଛି ବୋଲି ଜାଣିପାରୁ ନଥିଲି ।

ମୁଁ ମନୋରମକୁ କହିବାକୁ ଚାହୁଁଥିଲି, ମୁଁ ବିଗଳିତ ହୋଇ ନଦୀପରି ବହିଯାଉଛି ମନୋରମ । ତମେ ମତେ ଅଟକାଅ । ମତେ ଟୋକିଧର । ମତେ ବୁକୁରେ ଜଡ଼େଇ ନିଅ ।

କିନ୍ତୁ ମୋ ପାଟି ଫିଟିଲା ନାହିଁ ।

ମୁଁ ପଦେମାତ୍ର କଥା କହିପାରିଲି ନାହିଁ ।

ଆବାସୀ କଥା କହୁ କହୁ ଅଟକିଗଲା । ଛେପ ଢୋକିଲା । କହିଲା, ବାଣୀରେ, ଏହା କ'ଣ ? ଏହି ଅନୁଭୂତି ହିଁ କ'ଣ ପ୍ରେମ ? ଏହାକୁ ହିଁ କ'ଣ ପ୍ରେମ କୁହାଯାଏ ?

ଆବାସୀର ଦୃଷ୍ଟି ଦୂରରେ, ଖୁବ୍ ଦୂରରେ, ସୁଦୂର ଦିଗ୍‌ବଳୟ ସୀମାରେ ସ୍ଥିର ହୋଇ ଯାଇଥିଲା ।

ତା'ର ଧ୍ୟାନ ଭାଙ୍ଗିଦେବାକୁ ବାଣୀର ଇଚ୍ଛା ହେଲା ନାହିଁ ।

ସେ ଚୁପ୍‌ଚାପ୍ ବସି ରହିଲା ।

ଝୁରା ଝୁରା ଶୀତଳ ପବନ ତା'ର ଶାନ୍ତ ସ୍ନିଗ୍ଧ ପ୍ରଲେପ ଦେଇ ବହିଯାଉଥିଲା । ଦେହ ସହିତ ମନ ମଧ୍ୟ ଶୀତଳ ଲାଗୁଥିଲା ।

କପାଳ ଉପରୁ କେଶ ପଙ୍‌କ୍ତିକୁ ଆଡ଼େଇ କାନ ମୂଳରେ ଖୋସିଦେଲା ଆବାସୀ । ଶାଢ଼ିକାନିଟାକୁ ପିଠିପଟେ ଘୋଡ଼େଇ ଆଣିଲା ।

ଏଥର ବାଣୀ ପଚାରିଲା, ତା'ପରେ ? କହ, ତା'ପରେ...

ସେ ଆବାସୀର ହାତପାପୁଲିକୁ ଉଠେଇଆଣି, କଅଁଳ ଭାବେ ମୁଠେଇ ଧରିଲା ।

ହସିଲା ଆବାସୀ ।

ତା' ହସ ଯେପରି ପତ୍ରରେ ପତ୍ରରେ ଢେଉ ଭାଙ୍ଗିଯାଇ ମର୍ମରି ଉଠିଲା ।

ହସି ହସି ସେ କହିଲା, ଆଚ୍ଛା, ତା'ପରେ କ'ଣ ହୋଇଥିବ ବୋଲି ତୁ ଭାବୁଛୁ ? କହିଲୁ ଦେଖି ।

ମୁଁ କିଛି ଭାବି ପାରୁ ନାହିଁ, ଆବାସୀ । ତୁ' କହ ।

ବାଣୀ କଣ୍ଠରେ ଆଶ୍ଚର୍ଯ୍ୟ ଖୁନ୍ଦି ହୋଇଯାଇଥିଲା ।

ତା'ପରେ.... ତା'ପରେ ଆଉ କିଛି ନାହିଁରେ ବାଣୀ !

କ'ଣ ଆଉ କହିବି ? ଯାହା ବି କହିଲେ... ମନେ ହେବ, 'ହେଲା ନାହିଁ । କିଛି ହିଁ କହି ହେଲା ନାହିଁ ।' କ'ଣ ବା କହିବି !

ଉଚ୍ଛଳ ଅନୁଭବ ମଧ୍ୟରେ ହୃଦୟର କମ୍ପନକୁ ଅନୁଭବ କରୁ କରୁ ମୁହୂର୍ତ୍ତ ପରେ ମୁହୂର୍ତ୍ତ ବିତିଯାଇଥିଲା । ସେହି ଦୁର୍ଲଭ ଅନାସ୍ୱାଦିତ ଆନନ୍ଦର ସ୍ୱାଦକୁ ରକୁଣୀଟାଏ ପରି ମୁଁ କେବଳ ଅନୁଭବ କରିଗଲିରେ ବାଣୀ ! ସେ ରାତି ସେମିତି ପାହିଗଲା ।

ଆବାସୀର କଣ୍ଠସ୍ୱର ରୁଦ୍ଧ ହୋଇଗଲା ।

ବହୁ ସମୟ ପରେ ଢୋକ ଗିଳି, ପ୍ରକୃତିସ୍ଥ ହେଲା ଆବାସୀ !

ରହି ରହି କହିଲା, ହଁ, ଜାଣିଲୁନା, ସ୍ୱାଭାବିକ ଭାବରେ ପ୍ରସନ୍ନ ସକାଳ ଆସିଲା । ଆକାଶର ସେଇ ଚିହ୍ନା ରାସ୍ତାରେ ସୂର୍ଯ୍ୟ ଚାଲିବାକୁ ଆରମ୍ଭ କଲା ।

ମୋର ବସ୍ ସକାଳ ସାତଟାରେ, ଏଇ ପାଖ ଛକ ବାଟେ ଯାଉଥିଲା । ତେଣୁ ସେଇ ବସ୍ ଧରି ଆମ ସ୍କୁଲ୍ ପାଖରେ ଓହ୍ଲେଇବାକୁ ମୁଁ ସ୍ଥିର କଲି । ତାହା ହିଁ ମୋ ପାଇଁ ସୁବିଧା ।

ସକାଳ ସାତଟା ସମୟରେ ସେହି ବସ୍ ଧରିବା ପାଇଁ ଆମେ ଜିପ୍‌ରେ ଆସିଲୁ । ମନୋରମ ନିଜେ ଡ୍ରାଇଭ୍ କଲା ।

ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପରେ ମୁଁ ରାସ୍ତାରେ, ଗଛ ବୃଚ୍ଛର ଅନ୍ଦି-ସନ୍ଧିରେ ବୁଲିବାକୁ ଲାଗିଲି । ଭାରି ସୁନ୍ଦର ଜାଗା ।

ଜାଣିଛୁନା ବାଣୀ, ଆମ ରାଜ୍ୟରେ ଏତେ ସୁନ୍ଦର ସୁନ୍ଦର ସ୍ଥାନ ସବୁ ରହିଛି ଯେ, ସେସବୁ କହିହେବ ନାହିଁ । ବଣ ଜଙ୍ଗଲ, ପାହାଡ଼, ଝରଣାର ଦୃଶ୍ୟ କି ସୁନ୍ଦର ସତେ ! ତୁ' ତ କୋରାପୁଟ, କଳାହାଣ୍ଡିର ଜଙ୍ଗଲ ପାହାଡ଼ ଦେଖିଛୁ । କ'ଣ ଅବା ତୋତେ ସେ ଦୃଶ୍ୟର ସୌନ୍ଦର୍ଯ୍ୟ କଥା ବଖାଣିବି !

ସେହି ଜଙ୍ଗଲ, ସେହି ଝରଣା, ସେହି ଅଁଳାବଣ, ସେହି ଶାଳବଣ, ସେହି ଶିଆଡ଼ିଲତା କଥା ଭାବିଲେ ଏବେ ମଧ ରୋମାଞ୍ଚ ଆସେ । ପଳାଶ ବଣରେ ଯେତେବେଳେ ଫୁଲ ଫୁଟିବା ଆରମ୍ଭ ହୋଇଯାଏ... ମନେ ପକେଇଲୁ, ଆମେ ତାକୁ ଦେଖି କେମିତି ପାଗଳ ପରି ହୋଇଯାଉଥିଲେ ! ଲକ୍ଷ୍ମୀପ୍ରିୟା ଆଉ ସଜନୀ କେମିତି ସେଇ ଝରାଫୁଲରେ ଶୋଇପଡ଼ନ୍ତି, ତୋର ମନେ ଅଛି ? ଆଉ ତୁ' ତ କହୁଥିଲୁ, ପଳାଶ ବନରେ ଅଗ୍ନିର ମହୋତ୍ସବ ! ମନେ ଅଛି ନା ?

ସେସବୁ କ'ଣ ଭୁଲିହେବ ଆବାସୀ ? ସେ ସମୟତକ ତ ଆମ ଜୀବନର ସ୍ୱର୍ଣ୍ଣଯୁଗ । ସର୍ବଶ୍ରେଷ୍ଠ ଯୁଗ ।

ହଁ ! ଅତୀତଟା ସର୍ବଦା ସୁଖପ୍ରଦ ପ୍ରାୟ ଲାଗିଥାଏ ।

କିନ୍ତୁ ଆମ ସାଙ୍ଗସାଥୀମାନଙ୍କର, ସେହି ସମୟର ସୁଗନ୍ଧି ସରିବାର ନୁହେଁ । ଭାବିଲା ମାତ୍ରକେ ହିଁ ସୁବର୍ଣ୍ଣ ଚମ୍ପାର ବାସ୍ନା, ନାଗେଶ୍ୱର ଫୁଲର ବାସ୍ନା, ମନୋହର ଫୁଲର ବାସ୍ନା ଆସି ନାକରେ ବାଜେ ।

ଏପଟେ ଯେତେ ଫୁଲ ସେସବୁ ବିଦେଶୀ ଫୁଲ । ସେପଟେ ଯେତେ ଫୁଲ ସେସବୁ ଆମ ସଂସ୍କୃତିର ଫୁଲ । ମଲ୍ଲୀ, ମାଳତୀ, ନିଆଳି, ଯୁଇ, ଯାଇ, ନାଗେଶ୍ୱର । କେତେ କେତେ ଫୁଲ । ନାଁ ସବୁ ଆଉ ମନେ ନାହିଁ । ବାଣୀ ହସିଲା ।

ଏପଟେ ମଲ୍ଲୀ ଫଲ୍ଲୀ ଏମିତି ଦି' ତିନିଟା ଫୁଲ ଯାହା ମୋ ଆଖିରେ ପଡ଼େ । ବାସ୍ନା ବି ସେତେ ନଥାଏ ।

ଛାଡ଼୍, ସେସବୁ କଥା । ତୁଳନା କଲେ ଭୁଲ୍ ହୋଇଯିବ । ବାଣୀ କଥାରେ ଆବାସୀ ହସିଲା । କହିଲା, ସତ କଥା, ସତରେ ଭୁଲ୍ ହୋଇଯିବ । ସେପଟେ ପାହାଡ଼ ପର୍ବତ । ଏପଟେ ସମୁଦ୍ର, ସମତଳ । ତେଣୁ ଯେ ଦେଶେ ଯାଇ, ସେ ଫଳ ଖାଇ ।

କହ, ତା' ପରେ କ'ଣ ହେଲା । ବସ୍ ଆସିଲା ତ- ବାଣୀ ହସୁ ହସୁ ପରିହାସ କଲାପରି ପଚାରିଲା ।

ହଁ ଠିକ୍ ସମୟରେ ବସ୍ ଆସିଲା । ମୁଁ ବସ୍‌ରେ ବସିଲି ।

ମନୋରମ ହାତ ହଲେଇ, ମନଭରା ପରିତୁଷ୍ଟ ଭାବଟିଏ ଭିତରେ ମତେ ବିଦାୟ ଦେଲା ।

ବସ୍ ଛାଡ଼ିଲା । ସେ ଲୁଚିଯିବା ଯାଏ ମୁଁ ଚାହିଁଥିଲି ।

ବସ୍ ଭିତରେ ଜଣେ କିଏ କହିଲା, ଇଏ ବାଘା ସାହେବ । ଭାରି କଡ଼ା ।

ଆଉ ଜଣେ କହିଲା, ସୁଦ୍ଧୁ ପାଗେଳାଟାଏ । କାମ କରୁଥିବ ନହେଲେ ବଣ-ଜଙ୍ଗଲରେ ଏକା ଏକା ବୁଲୁଥିବ ।

x x x x

ହଠାତ୍ ଆବାସୀ ବାଁ ହାତ କଟଟିରେ ବନ୍ଧାଥିବା ଘଣ୍ଟାକୁ ଦେଖିଲା, କହିଲା, ଏଥର ତାଲ୍ ତଳକୁ ଯିବା । ଥଣ୍ଡା ଲାଗିଲାଣି ।

ଦୁହେଁ ତଳକୁ ଆସିଲେ । ଗୋଡ଼ ହାତ ମୁହଁ ଧୋଇ, ପାଣି ପିଇଲେ । ପୋଛି ହୋଇସାରି ଆବାସୀ କୁଣ୍ଠିତ କଣ୍ଠରେ କହିଲା, ବାଣୀ, ଚା' ଟିକେ ଦରକାର ହେଉଛି ।

ବେଶ୍ ତ ! ତୁ ଯା ଖଟରେ ଶୋଇଥା । ମୁଁ ସାଙ୍ଗେ ସାଙ୍ଗେ କରି ଆଣୁଛି ।

ବାଣୀ ଷ୍ଟୋଭ୍ ଲଗେଇ ଚା' ତିଆରି କଲା । ଭୃରୁ ବଙ୍କେଇ, ବଙ୍କା ହସ ହସି ଦାନ୍ତ ଚିପି କହିଲା, କ'ଣ, ସେହି ଦିନଠାରୁ ରାତିଅଧିଆ ଚା'ଟା ଅଭ୍ୟାସ ହୋଇଗଲା କି ?

ଶବ୍ଦ କରି ହସି ଉଠିଲା ଆବାସୀ ।

ମୁଣ୍ଡରେ ପାନିଆଁ ଚଳେଇ କହିଲା, ନା, ନା । ସେଦିନ ରାତି ପର ଠାରୁ ଆଜିଯାଏ ରାତିଅଧିଆ ଚା' ପି ନାହିଁ । କହନ୍ତୁ, କିଏ ଦେବ ? ଜଣେ କିଏ ନଦେଲେ ନିଜେ ଚା' କରି ନିଜେ ପିଇବାକୁ କ'ଣ ଇଚ୍ଛା ହେବ ରାତି ଅଧରେ ?

ପୁଣି ହସି ଉଠିଲା ଆବାସୀ ।

ସେ ଥର ମନୋରମ ଦେଇଥିଲା । ଆଜି ତୁ' ଦେଉଛୁ । ଏମିତି ଅନ୍ତରଙ୍ଗ ଲଗ୍ନରେ ଏକା ଏକା ଚା' ପିଇବାରେ ଆମେଜ୍ ନଷ୍ଟ ହୋଇଯାଏ । ତେବେ କ'ଣ ମୋ ପାଇଁ ଏକା କରୁଛୁ କି ? ଆମେଜ୍‌ଟା ଯେ ନଷ୍ଟ ହୋଇଯିବ । ମୋ ପାଇଁ ଚା' କର । ତୋ' ପାଇଁ ସେଥିରେ ଟୋପାଏ ପାଣି ଦେଇ ଦେ । ବୁଝିଲୁଟି ?

ବାଣୀ ହସିଲା । କହିଲା, ଯଦିଓ ମୁଁ ମନୋରମ ନୁହେଁ, କି ତାଙ୍କ ପାର୍ଟ କେବେହେଲେ ନେଇପାରିବି ନାହିଁ କି ଆମେଜ୍‌ଟାକୁ ବି ଠିକ୍ ରୂପେ ସମଝି ପାରିବି ନାହିଁ, ତେବେ ବି ଏଇ ପରମ-ଲଗ୍ନରେ କେବଳ ତତେ ତା'ଦେଇ ବେରସିକର ପରିଚୟ ମୁଁ କଦାପି ଦେବିନାହିଁ ।

ସାବାସ୍ !! ଆବାସୀ ତାଳ ଛିଣ୍ଡେଇଲା ପରି କହିଲା ।

ଘର ଭିତରଟାକୁ ଥରେ ଚାହିଁ, ତା'ପରେ ଚେୟାରଟାକୁ ଝରକା ପାଖକୁ ଉଠେଇନେଇ ବସିଲା ।

ଚେୟାରରେ ଆଉଜି ପଡ଼ିଲା । ଆଖିବୁଜି ମୁଣ୍ଡକୁ ପଛ ପାଖକୁ ଝୁଲେଇଦେଲା । ଦୁଇ ଗୋଡ଼କୁ ହଲେଇ ହଲେଇ, ଦୁଇ ହାତ ଆଙ୍ଗୁଠି ଟିପରେ ଚେୟାର ହାତରେ ବାଜା ବଜେଇଲା ।

ବାଣୀର ଶୋଇବା ଘରଟି ଦକ୍ଷିଣ ଦିଗରେ । ଦକ୍ଷିଣ ପାଖକୁ ବଡ଼ ବଡ଼ ଝରକା ଦୁଇଟା । ପୂର୍ବ ପାଖରେ ମଧ୍ୟ ଦୁଇଟା ବଡ଼ ଝରକା ।

ଦକ୍ଷିଣ ପାଖ ଝରକା ପାଖରେ ଆବାସୀ ବସିଥିଲା । ଖରାଦିନିଆ ଦକ୍ଷିଣା ପବନ । ତହିଁରେ ନଈ କୂଳିଆ ପବନ । ଏଇ ଘରଟାରେ ଢ଼େର ପବନ । ଫ୍ୟାନ୍ ପ୍ରାୟତଃ ଦରକାରରେ ଆସେ ନାହିଁ । ଘର ଚାରିପାଖରେ ବଡ଼ ବଡ଼ ଗଛ, ନଈ ପୋଖରୀ ଥିବାରୁ ଘରଟା ବେଶ୍ ଥଣ୍ଡା ।

ହାବୁକାଏ ପବନକୁ ପାଟି ମେଲେଇ ଆଁ କରି ଶୋଷିନେଲା ଆବାସୀ । କହିଲା, ଆଃ ! ଏ ପବନକୁ କେତେଟା ଇଲେକ୍‌ଟ୍ରିକ୍ ଫ୍ୟାନ୍ ସରିହେବ ! ଦିନକୁ ଦିନ ଏ ପବନ ଟିକିକ ବି ଅପ୍ରାପ୍ୟ ହୋଇପଡୁଛି ।

ବାଣୀ ମୁରୁକି ହସି ପଚାରିଲା, 'ସେହି ନିର୍ଜନ ରଜନୀରେ ଆତ୍ମସମର୍ପଣର ମୁହୂର୍ତ୍ତ କ'ଣ ତୋ' ଲାଗି ଆସିଲା ନାହିଁ ?'

ବାଣୀକୁ ତୀର୍ଯ୍ୟକ୍ ଦୃଷ୍ଟିରେ ଚାହିଁ, ତଳ ଓଠକୁ କଣେଇକରି କାମୁଡ଼ିଲା ଆବାସୀ ।

ବାଣୀ ହାତରୁ ତା' କପ୍ ନେଇ, କହିଲା, ବସ୍, ଏଇଠି । ଖଟ ଉପରକୁ, ତା' ପାଖକୁ ଇଙ୍ଗିତ କଲା ।

ବି ଡ୍ରୋକ ଚା' ପିଇସାରି, ହସନ୍ତ ଗଳାରେ କହିଲା, ଆତ୍ମସମର୍ପଣ ତୁ କାହାକୁ କହୁଛୁ ? ମୁଁ ଠିକ୍ ଜାଣିପାରୁ ନାହିଁ । ତେବେ ସେହି ସୁରଭିତ ସାର୍ଥକ ମୁହୂର୍ତ୍ତରେ ସ୍ଥୂଳ ଶରୀରକୁ ବାଦ୍ ଦେଇ ମୋର ଆଉ ସବୁକିଛି ଅର୍ପିତ ହୋଇଯାଇଛି ।

ଶେଷ ଆଡ଼କୁ ଆବାସୀର ଗଳା ଭାରି ହୋଇଯାଇଥିଲା । ଚା' ପିଇସାରି ଖଟ ଗୋଡ଼ ପାଖରେ କପ୍‌ଟାକୁ ଥୋଇଦେଲା ସେ । ଦୁଇ ପାପୁଲିକୁ ଘଷି, ମୁହଁରେ ବୁଲେଇ ଆଣିଲା । କହିଲା, ପ୍ରେମ ସଚରାଚର ସମସ୍ତଙ୍କୁ ଭିକାରୁଣୀ କରିଥାଏ । ନିଃଶ୍ୱାସ ନେଲା ଆବାସୀ । ଟିକିଏ ରହିଗଲା । କହିଲା, ଆଉ ଯାହାକୁ ଭିକାରୁଣୀ କରି ନପାରେ ତାକୁ ଦୁର୍ଗମ ପଥର ପଥିକୀ କରେ । ତା' ଦ୍ୱାରା ଜୀବନ ପ୍ରତି ଅଧିକ ଆକର୍ଷଣ ଆସେ । କିନ୍ତୁ ମୋ କେସ୍‌ରେ ଏ ଦୁଇଟାଯାକ ଆସିଲା ନାହିଁ, ବାଣୀ । ମିଛ ହୋଇଗଲା ।

ତା'ପରେ ଆବାସୀ ହସିଦେଇ କହିଲା, ଅବଶ୍ୟ ପ୍ରେମଟା ମୋ ପାଖକୁ ବହୁ ବିଳମ୍ବରେ ଆସିଲା । ଆଉ ସେ ଆସିବାର ଆହୁରି ବିଳମ୍ବରେ ମୁଁ ତାକୁ ବୁଝିଲି । କବିଙ୍କ ଭାଷାରେ ଏହାକୁ ବିଳମ୍ବିତ କି ବିଡ଼ମ୍ବିତ କୁହାଯିବ, ତା' ତୁ ବିଚାର କରିବୁ ।

ପ୍ରେମ ମତେ ଦୁଃଖ ଦେଲା ନାହିଁ କି ଶୋକ ଦେଲା ନାହିଁ । କେବଳ ଗଭୀର ଅନୁଭବରେ ବୁଡ଼େଇ ରଖି, ଉଦାସ କରିଦେଲା ।

ସଙ୍ଗେ ସଙ୍ଗେ ବାଣୀ କହିଲା, ଖାଲି ଉଦାସ କହିଲେ ଭୁଲ୍ ହେବ ।

କହ, ତା'ପରେ ?

ବାଣୀ ପଚାରିଲା ଓ କପେ ଚା' ବଢ଼େଇ ଦେଲା ତାକୁ ।

ସେହି ଗ୍ରୀଷ୍ମ ଛୁଟିରେ ଦଶପଲ୍ଲାକୁ ମୋର ବଦଳି ହୋଇଗଲା । ନୂଆ ଜାଗା । ନୂଆ ଦାୟିତ୍ୱ । କାରଣ ପ୍ରମୋସନ୍ ପାଇଥାଏ ।

ନୂଆ ଜାଗାରେ, ନୂଆ କାମର ଦାୟିତ୍ୱ ବହନ କରି, ସେଠାରେ ନିଜକୁ ଖାପ ଖୁଆଇ ଚଳିବାରେ କିଛି ଦିନ ଚାଲିଗଲା । ସ୍କୁଲ୍ ହତା ଭିତରେ ମହା ନିମଗଛଟାଏ ଥାଏ । ଶୁଣିଲି, ନୂଆ ହେଡ୍ ମିଷ୍ଟ୍ରେସ୍ ଆସିବା ମାତ୍ରକେ ପ୍ରସ୍ତାବ ଦିଅନ୍ତି, ସେହି ଗଛଟାକୁ କାଟି ଦେବାକୁ ।

ବୁଢ଼ା ପିଅନ ଓ ତା' ସ୍ତ୍ରୀ କହନ୍ତି, ଥାଉ ଆଜ୍ଞା । ଗଛଟା ଥାଉ । କୋଉ କାଳର ଗଛଟା ଥାଉ ଥାଉ । ସେଇଟା ବା ପିଲାମାନଙ୍କର କି ଲୋକସାନ କରୁଛି । ଦେଖିବାକୁ

ଗଲେ ଆହୁରି ସେ ଉପକାର କରୁଛି, ନିମ୍ବଗଛର ହାଓ୍ଵା ଭଲ ଆଜ୍ଞା, ପିଲାଏ ନିରୋଗୀ ରହିବେ ।

ପିଲାଏ ନିରୋଗୀ ରହନ୍ତୁ କି ନରହନ୍ତୁ ବୁଢ଼ା ବୁଢ଼ୀଙ୍କ ଆତୁର କଥାରେ ଗଛଟା ଆଉ କଟା ହୋଇ ନାହିଁ ।

ମୁଁ ସେ ଗଛକୁ କାଟିବା କଥା ତ ଉଠେଇଲି ନାହିଁ । ପରନ୍ତୁ ସେ ଗଛ ତଳେ ପ୍ରତି ସନ୍ଧ୍ୟାରେ ବସି ବସି ତାକୁ ଚିକ୍କଣ ମସୃଣ କରିଦେଲି ।

ଦିନେ ମୁଁ ହଠାତ୍ ଜାଣିପାରିଲି ଯେ, ମୁଁ ପ୍ରତିଦିନ ସନ୍ଧ୍ୟା ପରେ ଯେଉଁ ନିର୍ଜନ ସମୟତକ ନିମ୍ବଗଛ ତଳେ ବିତଉଛି ସେଇ ସମୟରେ..

ଅଟକିଗଲା ଆବାସୀ । ତା' ମୁହଁ ତଳକୁ ହୋଇଗଲା । ମୁହଁରେ ରକ୍ତିମ ଆଭା ଫୁଟିଉଠିଲା ମାତ୍ର କେତୋଟି ସେକେଣ୍ଡ ପାଇଁ । ତା'ପରେ ସେ ଝାଡ଼ି ହୋଇ ଯାଇ କହିଲା,

ମୁଁ ଜାଣି ପାରିଲି ଯେ, ସେଇ ମୁହୂର୍ତ୍ତଗୁଡ଼ିକ ମୋର ମନୋରମ ଭାବନାରେ କଟୁଛି । ମୁଁ ନିଜେ ଆଚମ୍ବିତ ହୋଇଗଲି । ନିଜକୁ ନିଜେ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ବେଳକୁ ବେଳ ନିରେଖି ନିରେଖି ଦେଖିଲି । ସେ ଦେଖିବାର ଯେମିତି ଶେଷ ନାହିଁ ।

ମୋ ଭାବନା ମନୋରମକୁ ଆଶ୍ରୟ କରି ଶୂନ୍ୟକୁ ଲଟେଇଗଲା । ଝଙ୍କାଳିଆ ହୋଇଉଠିଲା । ଫୁଲ ଫୁଟିଲା । ସୌରଭରେ ମୋ ଅନ୍ତର ସୁରଭିତ ହୋଇଗଲା । ଦିନ ଦିନ, ମାସ-ମାସ ହୋଇ ବର୍ଷ ବିତିଗଲା । ଦଶପଲ୍ଲାରେ ମୁଁ ଯେତେଦିନ ରହିଲି, ଏପରି କୌଣସି ରାତି ବିତିନାହିଁ, ଯେଉଁ ରାତିରେ ମନୋରମର ଭାବନରେ ମୁଁ ଆମୋଦିତ ନହୋଇଛି । ତା'ର ଦୃଷ୍ଟି ମତେ ବେଷ୍ଟନ ନକରିଛି ।

ଓଃ ! କି ଅନୁଭବ ! ଏ କି ରକମ ପାଗଳାମୀ କହ ତ ? ତା' ସହିତ ମୁଁ ମନେ ମନେ କଥା ହୁଏ । ତାକୁ ମୁଁ ପ୍ରତ୍ୟକ୍ଷ କରେ । ସେ ରାତିରେ ମନୋରମ କହିଥିବା ପ୍ରତ୍ୟେକ ବାକ୍ୟକୁ ମୁଁ ମନେ ମନେ ଗୁଣି ହୁଏ । ସେ ଆସି ମୋ ଆଗରେ ଠିଆହୁଏ । ମୁଁ ମୋହମୁଗ୍ଧ ହୋଇ ବିହ୍ଵଳତାରେ ସ୍ଥିର ହୋଇଯାଏ ।

ଦିନେ ମନକୁ ଆସିଲା, ମନୋରମ ଏତେ ମନେ ପଡୁଛି ନାହିଁକି ? କାହିଁକି ମୁଁ ତାକୁ ଏତେ ଭାବୁଛି ?

ଏହା ହିଁ କ'ଣ ପ୍ରେମ ?

ଧେତ୍ ! ଏ ବୟସରେ ପୁଣି ପ୍ରେମ !!

ଆଗରୁ କହିଛି ତ, ପ୍ରେମର ଦୁଃଖ କି ସୁଖ ମୋ ପାଇଁ କିଛି ବି ନଥିଲା । କେବଳ ପ୍ରେମର ଭାବ, ଆବେଗ, ଲୀଳା ଖେଳାରେ ମୁଁ ଭାସିଗଲି ।

ସେ ଏକ ପ୍ରଖର ସ୍ରୋତ ।

କିନ୍ତୁ ଏସବୁ ଖାଲି ମନେ ମନେ ।

ମନୋରମ କେଉଁଠି ଆଉ ମୁଁ କେଉଁଠି ।

ସେ ଏବେ କେଉଁଠି ଅଛି । କ'ଣ କରୁଛି । ତା' ମୁଁ ଜାଣି ନଥିଲି । ଅଥଚ ତାକୁ ମୁଁ ଭାବୁଥିଲି । ଅବସର ପାଇଲା ମାତ୍ରେ ଭାବୁଥିଲି ।

ଥରେ କାମରେ କେଉଁଝର ଯାଇଥିଲି । ସେତିକିବେଳେ ତା'ର ଖୋଜଖବର କରିଥିଲି । ସେ ସେଠାରୁ କଳାହାଣ୍ଡି ଓ ତା'ପରେ କୋରାପୁଟରେ ଥିଲା । ପରେ ଭୁବନେଶ୍ୱର କି ଖୋର୍ଦ୍ଧା, ଏମିତି କୁଆଡ଼େ ଯାଇଛି । ସଠିକ୍ ଖବର ପାଇଲି ନାହିଁ । କେହି ଦେଇପାରଲେ ନାହିଁ ।

ତୋ' ଆଗରେ ମୁଁ ଅକପଟରେ ପ୍ରକାଶ କରୁଛି ବାଣୀ, ପଢ଼ିଲା ବେଳେ ମନୋରମ ମତେ ଭଲ ଲାଗିଥିଲା । ମାତ୍ର ସେଇଟା କେବଳ ଭଲ ଲାଗିବା । ତାକୁ ଆଦୌ ଭଲ ପାଇବା କୁହାଯିବ ନାହିଁ । ସେଇଟା ଭଲ ପାଇବା ନୁହେଁ । ତା'ପାଇଁ ଏହି ସାଧାରଣ ସ୍ନେହ ବ୍ୟତୀତ ମୋ ମନରେ ଆଉ କିଛି ନଥିଲା । ତୁ' ତ ମତେ ଭଲ କରି ଜାଣୁ ବାଣୀ ।

ପ୍ରେମ ମୋ ଦ୍ୱାରା ସମ୍ଭବ ନଥିଲା । ପଥରରେ ଦୁବଘାସ କଅଁଳେ ନାହିଁ । ଏକଥା ତ ତୁ ବହୁବାର ମତେ କହିଥିବୁ । ମତେ ପଥର ସହିତ ତୁଳନା କରି, କେତେଥର ଭର୍ତ୍ସନା ନକରିଛୁ ? ଏସବୁ ତୋର ମନେ ଥିବ ।

ତା'ପରେ ଆବାସୀର କଣ୍ଠସ୍ୱର ବଦଳିଗଲା । ସେ କହିଲା, ସେହି ରାତିରେ ମନୋରମର ବ୍ୟବହାର, କଥାବାର୍ତ୍ତା ମତେ ମୁଗ୍ଧ କରି ଦେଇଥିଲା । ସେହି ପରିସ୍ଥିତି ସେହି ପରିବେଶ, ତା' ପ୍ରତି ମୋ ପୂର୍ବ ସ୍ନେହ - ଏସବୁ ମିଶି, ଏକାଠି ଗୋଳି ଘାଣ୍ଟି ହୋଇ, କ'ଣ କେମିତି ହୋଇଗଲା କେଜାଣି ! କିନ୍ତୁ ବିଶ୍ୱାସ କର, ସେତେବେଳେ ମଧ୍ୟ ମୁଁ କିଛି ଜାଣିପାରି ନଥିଲି । କିନ୍ତୁ...

... କିନ୍ତୁ ତା' ପରେ....

ତା'ପରେ ହିଁ ସ୍ଲୋ ପଏଜନ୍ ପରି ମୁଁ ଧୀରେ ଧୀରେ ସମ୍ପୂର୍ଣ୍ଣ ପ୍ରେମଗ୍ରସ୍ତ ହୋଇଗଲିରେ ବାଣୀ ।

ମୋର ପ୍ରେମ ଯେତେବେଳେ ମୋ ଜୀବନ, ମୋ ମନ, ମୋ ହୃଦୟ ଓ ସର୍ବୋପରି ମୋ ଆତ୍ମାକୁ ଆଚ୍ଛନ୍ନ କରି, ମତେ ମଗ୍ନ କରିଦେଲା, ସେତେବେଳେ ପ୍ରେମର ସେହି ବିଚିତ୍ର ରୂପ, ପବିତ୍ର ସ୍ୱାଦରେ ମୁଁ ବିହ୍ୱଳ ହୋଇପଡ଼ିଲି । ରୋମାଞ୍ଚିତ ହେଲି । ବାରମ୍ବାର ରୋମାଞ୍ଚିତ ହେଲି ।

ବାଣୀରେ, ମୋର ଏହି ଗୋପନ ଅଲକ୍ଷ୍ୟ ପ୍ରେମର ଯେଉଁ ଅନୁଭୂତି ଜାତ ହେଲା, ସେଠାରେ ଚାଞ୍ଚଲ୍ୟ ବା ବୈଚିତ୍ର୍ୟ ନଥିଲା ।

ତାହା ଥିଲା ଅତି ଶାନ୍ତ । ଅତି ନୀରବ । ଅତିଶୟ ମୌନ ଥିଲା । ଠିକ୍ ସେହି ଗଭୀର ରାତି ପରି ।

କିଛି ସମୟ ପୁଣି ନୀରବରେ ବିତିଗଲା ।

ତା'ପରେ ପ୍ରକୃତିସ୍ଥ ହେଲାପରି ଆବାସୀ କହିଲା,

ବାଣୀ, ମୁଁ ଭାବପ୍ରବଣ ହୋଇପଡୁଛି ନା ? କ'ଣ ସବୁ ଗପିଯାଉଛି ! ତତେ ବିରକ୍ତ ଲାଗୁ ନାହିଁ ତ ?

ବାଣୀ ଫିକ୍ କିନା ହସିଦେଲା । ଆବାସୀ ହାତକୁ ମୁଠେଇ ଧରି କହିଲା, ଏମିତି କଥା ଶୁଣିବାକୁ କ'ଣ ବିରକ୍ତ ଲାଗେ ? ଏପରି କଥା ତୁ କହୁନୁ କିପରି !

ତେବେ ଆବାସୀ, ହଁ, ଆଜି ମଧ ମୁଁ କହୁଛି ସତରେ ତୁ ପଥର । ପଥର ନହୋଇ ମାଟି ହୋଇଥିଲେ ବଗିଚାଟିଏ ହୋଇପାରିଥାନ୍ତା । ନଇ ବି ପୋଖରୀ ହୋଇଥିଲେ ପଦ୍ମ କି କଇଁ ଫୁଟିଥାନ୍ତା । କିନ୍ତୁ..

ଠିକ୍ ! ବାଣୀ ମୁହଁରୁ କଥା ଛଡ଼େଇ ନେଇ ଆବାସୀ କହିଲା, ଠିକ୍ । ଏକ୍‌ବାରକେ ଠିକ୍ । କିନ୍ତୁ ବାଣୀରେ, ମୋ ପାଇଁ ଏସବୁ କିଛି ମଧ ହେଲା ନାହିଁ । ବଗିଚା ହେଲା ନାହିଁ କି କଇଁ ମଧ ଫୁଟିଲା ନାହିଁ । ଅଥଚ ପଥର ଫାଟିଗଲା ।

ଆବାସୀ ନୀରବ ହେଲା ।

ତା' ମୁହଁ ଉପରେ ବିଷାଦର ସୂକ୍ଷ୍ମ ପରଦାଟାଏ ଟାଣି ହୋଇଗଲା ।

ଆବାସୀ ଗଭୀର ଆବେଗରେ ବୁଡ଼ିଗଲା । ତା' ମୁହଁରେ ବିଷର୍ଣ୍ଣ ହସଟି ଅତି ବେଶୀ କରୁଣ ଦିଶିଲା ।

ବୁଝିଲୁ ବାଣୀ, ଏମିତି ଏମିତିରେ ଦୁଇ ବର୍ଷ ବିତିଗଲା । ବାଣୀ ବିସ୍ମିତ ହେଲା । ଦୁଇବର୍ଷ ?

ହଁ ଦୁଇ ବର୍ଷ ।

ଦୀର୍ଘ ଦୁଇ ବର୍ଷ, ଦୀର୍ଘ ଚବିଶ ମାସ, ଦୀର୍ଘ ସାତଶହ ତିରିଶ ଦିନ ତୁ ଚୁପ୍ ହୋଇ ରହିପାରିଲୁ ଆବାସୀ ?

ମନୋରମକୁ କିଛି ଖବର ନଦେଇ, ତା'ର କିଛି ଖବର ନନେଇ ତୁ ରହିଗଲୁ ? ରହିଯାଇ ପାରିଲୁ ? କେମିତି ଏହା କରିପାରିଲୁ ଲୋ ! ବାଣୀ କଣ୍ଠରେ ଅଭିଯୋଗ ଭରିଥିଲା ।

ବାଣୀ, କେମିତି ମୁଁ ରହିପାରିଲି, ମୁଁ ନିଜେ ବି ଜାଣିନାହିଁ । ତା' କହିପାରିବି ନାହିଁ । ତେବେ ନିଜେ କିଛି ଠିକ୍ କରିପାରିଲି ନାହିଁ କି କିଛି ସିଦ୍ଧାନ୍ତ ନେଇପାରିଲି ନାହିଁ । ନିଜର ଚିନ୍ତା-ଭାବନା, ନିଜର ଭଲ ପାଇବାକୁ ନେଇ ନିଜେ ଆତ୍ମସୁଖୀ ମଣିଷଟିଏ ହୋଇ ରହିଗଲି । ସାରାଦିନ ସ୍କୁଲ୍ କାମ । ପାଠ ପଢ଼ା । ରାତିରେ ଏଣୁ ତେଣୁ ଭାବୁ ଭାବୁ ଶୋଇ ପଡ଼ିବା । ଦିନ ବିତିଗଲା । କିଛି ତ ଅଟକି ହୋଇ ରହିଲା ନାହିଁ । କ'ଣ କରିଥାନ୍ତି - କହୁନୁ !

କ'ଣ କରିଥାନ୍ତୁ ? ବାଣୀ ସଙ୍ଗେ ସଙ୍ଗେ ଟେଡା ସ୍ୱରରେ କହିଲା ।

ମୂର୍ଖ କୋଉଠିକାର । କ'ଣ କରିଥାନ୍ତି ବୋଲି ପୁଣି ପଚାରୁଛୁ । କହ ଯେ କ'ଣ ନକରି ଥାନ୍ତୁ । ହଁ, ତା'ପରେ

ହସିଲା ଆବାସୀ । କହିଲା, ତୁ ଯାହା ଭାବୁଛୁ ମୋ ପାଇଁ ହୁଏତ ତାହା ସତ୍ୟ ହୋଇ ଉଠିପାରି ନାହିଁ ବାଣୀ । ମୁଁ କେବେହେଲେ ଅନୁଭବ କରି ନାହିଁ, ମୋ ପାଖରେ ମନୋରମ ନାହିଁ ବୋଲି । ସେ ସବୁବେଳେ ମୋରି ଭିତରେ ଥିଲା । ମୋ ଛାତି ଭିତରଟା, ହୃଦୟ କହିଲେ ବୋଧହୁଏ ଠିକ୍ ହେବ, ସେଇଟା ପ୍ରତି ନିଶୀଥରେ ଡାକବଙ୍ଗଳାର ଗୋଟିଏ ନିର୍ଜନ କୋଠରି ହୋଇଯାଏ । ମନୋରମ ସେଠି ବସିଥାଏ । ଚା' ପିଉଥାଏ । ଝରଣା ପାଖରେ ଠିଆ ହୋଇ ଦୂର ଦିଗନ୍ତକୁ ଚାହିଁଥାଏ । ମୁଁ ତା' ପାଖରେ ଥାଏ । ସେଇ ଘରେ ଥାଏ ।

ମୁଁ ଦେଖେ, ମତେ ଚାହିଁ ସେ କହୁଛି । ମୁଁ ଶୁଣିପାରେ ସେ କହୁଛି ।

ଆବାସୀ, ମୁନି ଋଷିମାନେ କହିଯାଇଛନ୍ତି , ଜୀବନ କାଳ ମଧ୍ୟରେ ଦୁଇଟି ଭାଗ ହିଁ ଶ୍ରେୟସ୍କର । ବନବାସରେ ଜୀବନ ଧାରଣ ଅଥବା ରାଜ୍ୟ ଓ ସମୃଦ୍ଧି ଲାଭରେ ପରାକ୍ରାନ୍ତ ସୌଭାଗ୍ୟଶାଳୀ ହେବା । ଏହାର ମଧ୍ୟବର୍ତ୍ତୀ — ଇନ୍ଦ୍ରିୟ ଭୋଗରେ କାଳଯାପନ ମନୁଷ୍ୟକୁ ଅଧଃପତିତ କରେ ।

ଶୁଣୁଛୁଟି ଆବାସୀ ! ଶୁଣ, ବନବାସରେ ନିର୍ଜନରେ ଜୀବନଯାପନରେ ଶାନ୍ତି ଥାଏ । ରାଜ୍ୟ-ସମ୍ପଦ ଇତ୍ୟାଦି ଲାଭ ମଧ୍ୟରେ ମଣିଷର ବଳ-ବିକ୍ରମ, ବୁଦ୍ଧି-କୌଶଳ ବ୍ୟାପୃତ ଥାଏ । ତେଣୁ ଏହି ଦୁଇ ଜୀବନ ପ୍ରବାହ ମଧ୍ୟରେ ବିକାଶ ଘଟେ । କିନ୍ତୁ ମଧ୍ୟପନ୍ଥାଟି ମଣିଷକୁ କିଛି ହିଁ ଦିଏ ନାହିଁ । ଅଳସ, ବିଳାସ, ଓ ନିଶ୍ଚିନ୍ତ ଜୀବନ-ଯାପନ କ୍ଷେତ୍ରରେ ଇନ୍ଦ୍ରିୟ ଭୋଗ ଅବଶ୍ୟମ୍ଭାବୀ ହୋଇଉଠେ । ଆଉ ନୂଆ ବିକାଶର କିଛି ଅବଲମ୍ବନ ରହେ ନାହିଁ ।

ବୁଝିଲ ଆବାସୀ, ସେଠାରେ ଗୋଟାଏ ଦିନ ହିଁ ତିନିଶ ପଁଷଠି ଦିନର ପୁନରାବୃତ୍ତି ଘଟାଏ !

ଧୁତ୍ ! - ମନୋରମ ଉଠି ଠିଆହୋଇ କୋଠରି ସାରା ପଦଚାରଣ କରେ ।

ଆଉ କେତେବେଳେ କହୁଛି, ମୁଁ ଶୁଣେ ।

ଜୀବନ ତ ସରେ ନାହିଁ ଆବାସୀ । କେବେ ବି ସରିଯାଏ ନାହିଁ । ଆଶା ଆଉ ପୂରିବ କେମିତି ଯେ ? ତେଣୁ ଆଶା ମଧ୍ୟ ପୁରେ ନାହିଁ । ଆମର ଚାହିଁବାର କ'ଣ ଶେଷ ଅଛି ଆବାସୀ ? ଯେତେ ବେଶୀ ମିଳୁନା କାହିଁକି, ଆହୁରି... ଆହୁରି... ପାଇବାକୁ ମନ ବ୍ୟାକୁଳ ହୁଏ । ଦଉଡ଼େ । ନିଜ ଭିତରେ ସ୍ଥିରତା ଆସେ ନାହିଁ । ଶାନ୍ତି ମିଳେ ନାହିଁ ।

ବାଣୀ, ଏସବୁର କ'ଣ ଶେଷ ଅଛି ?

ଏ ସବୁ ତ ଚିର ନୂତନ । ଏହା ତ ଅପ୍ରାପ୍ୟ ଇନ୍ଦ୍ରଧନୁର ରଙ୍ଗରେ ରଙ୍ଗୀନ୍ ! ତେଣୁ ଚିର ସୁନ୍ଦର । ସେ ନିତିନିତି କେତେ କଥା କହେ । ହସେ । ହସାଏ । ଦୁଃଖ କରେ । ଚୁପ୍ ହୋଇ ବସେ ।

ଆବାସୀ ଚେୟାରରୁ ଉଠି ଠିଆ ହୋଇଗଲା । ବାଣୀର ହାତଧରି ଆସି ଖଟ ଉପରେ ବସିଲା । ବାଣୀ ହାତକୁ ଝୁଙ୍କେଇ ଦେଇ କହିଲା, ମନୋରମ ମୋର ନିଃଶ୍ୱାସରେ ଗୋଳି ହୋଇଯାଇ ମୋର ହୃତପିଣ୍ଡରେ ରହିଗଲା ! ମୁଁ ନିରୁପାୟ ହୋଇଗଲିରେ !

ତା'ପରେ ନିଜକୁ ନିଜେ କହିଲା ପରି କହିଲା, ରେ ଜୀବନ ! କ'ଣ ତୁ ନକଲୁ ! ତୁ ପୁଣି ମୋରି ମୁହଁରୁ ପ୍ରେମର ସଙ୍ଗୀତ ଶୁଣି ନେଲୁ ! ପ୍ରୀତିର ଗୀତି ରଚନା କରାଇନେଲୁ !

ପ୍ରେମ - ପ୍ରେମ !!

ପ୍ରେମର କ'ଣଟା ବା ମୁଁ ବୁଝେରେ ବାଣୀ !

ମୁଁ ତ ପଥର ! ପଥର ! ନିର୍ଘାତ ପଥରଟାଏ !!

ଓଃ !

ତା' କଣ୍ଠସ୍ୱର ରୁଦ୍ଧ ହୋଇଗଲା ।

ଆବାସୀର କଣ୍ଠସ୍ୱର, ତା' କହିବା ଭଙ୍ଗୀ ବାଣୀକୁ ଥରେଇଦେଲା । ତା' ଦେହ ଶୀତେଇ ଉଠିଲା ।

ସେ ଆବାସୀକୁ ଦୁଇବାହୁରେ ଆଲିଙ୍ଗି ନେଇ, ବୁକୁ ଉପରେ ଜଡ଼ାଇ ଧରି କହିଲା, ଓହୋରେ ତୋର ପ୍ରେମ ! ଏ ପ୍ରେମ ତ ରାଧା-ପ୍ରୀତିକୁ ବଳିଗଲା ! ଆବାସୀରେ, ତୁ ତ ଗୋଟିପଣେ ପ୍ରେମ ହୋଇଗଲୁ । ଗୋଟିପଣେ ପ୍ରେମ ହିଁ ପାଲଟିଗଲୁରେ ।

ସୁଦୂର କେଉଁ ସବୁଜ-ପ୍ରାନ୍ତରରେ ହଜି ଯାଉ ଯାଉ ଆବାସୀର ସ୍ୱର ଭାସି ଆସିଲା, ଏଇ ପ୍ରେମଟା କ'ଣରେ ବାଣୀ ! କ'ଣ ବା ଏଇ ଜୀବନଟା !

ବାଣୀ ଭାବିଲା, ଏ ପ୍ରଶ୍ନର ସତରେ ହିଁ ଉତ୍ତର ନାହିଁ। ତେଣୁ ଏ ପ୍ରଶ୍ନ ଆବାସୀ ପାଖରେ ବୃଥା ! ନିରର୍ଥକ ।

ସେହି ଉତ୍ତର ନଥିବା ପ୍ରଶ୍ନ ପାଖରେ ନିରୁତ୍ତର ରହିବା ବ୍ୟତୀତ ଆଉ ବା ଉପାୟ କ'ଣ ?

ଖଟ ବାଡ଼ାକୁ ଆଉଜି ବସି, ଗୋଡ଼ ଦୁଇଟାକୁ ସିଧାକରି ଲମ୍ବେଇଦେଲା ଆବାସୀ । ଅଣ୍ଟା, କାନ୍ଧ ସଳଖିଲା ।

ବାଣୀ ହାତକୁ ମୁଠେଇ ଧରି କହିଲା, ବୁଝିଲୁନା ବାଣୀ, ମୁଁ ନଦୀ ପରି ପ୍ରବାହିତ ହେଲି ତ ନାହିଁ। କିନ୍ତୁ ଯେମିତି କି ମୁହାଣ ପାଲଟିଗଲି ।

ନା ନଦୀ ! ନା ସମୁଦ୍ର !! କହ ତ, କ'ଣ କୁହାଯିବ ତାକୁ ? ସେହି ଅବସ୍ଥାକୁ ?

ଯେଉଁ ପର୍ଯ୍ୟନ୍ତ ସେହି ସ୍ରୋତଟି ବହିଚାଲିଥାଏ ସେହି ପର୍ଯ୍ୟନ୍ତ ତାକୁ ନଦୀ କୁହାଯାଏ ନା ? ଯେତେବେଳେ ସେହି ନଦୀଟି ସମୁଦ୍ରରେ ମିଶିଯାଏ, ତା'ର ଆଉ ଅସ୍ତିତ୍ୱ ରହେ ନାହିଁ, ସେତେବେଳେ ସେ ସମୁଦ୍ର ହୋଇଯାଏ ।

କିନ୍ତୁ ଯେଉଁଠି ନଦୀ-ସମୁଦ୍ର ଏକାଠି ମିଳିତ ହୋଇଛନ୍ତି, ପ୍ରତି ମୁହୂର୍ତ୍ତରେ ପରସ୍ପରକୁ ପରସ୍ପର ପାଇଛନ୍ତି । ପରସ୍ପରକୁ ପରସ୍ପର ଜଡ଼ାଇ ଧରୁଛନ୍ତି, ସେଇଠି-ତାହାକୁ କ'ଣ କୁହାଯିବ ବାଣୀ ? କ'ଣ କୁହାଯିବ ?

କେବଳ ମୁହାଣ କହିଦେଲେ କ'ଣ ତା'ର ଶେଷ ହୋଇଗଲା ? ତା'ପରେ ଆଉ କିଛି ନାହିଁ ? ସେହି ପ୍ରତି ମୁହୂର୍ତ୍ତରେ ପରସ୍ପର ପରସ୍ପରକୁ ପାଇବା, ତାକୁ... ତାକୁ... ଆବାସୀର ଆଖି ବୁଜି ହୋଇଗଲା । କଣ୍ଠ ରୁଦ୍ଧ ହୋଇଗଲା ।

ଆବାସୀର ଉପଲବ୍ଧି ବାଣୀକୁ ଚମତ୍କୃତ କଲା । ପୁଲକିତ କଲା । ଆଗ୍ରହୀ ଦୃଷ୍ଟିରେ ସେ ମୁଗ୍ଧ ହୋଇ ଆବାସୀ ମୁହଁକୁ ଚାହିଁ ରହିଲା । ତା' ମୁହଁର ପ୍ରଶାନ୍ତ ଭାବକୁ ଚାହିଁ ଭାବିଲା—ଏ ଦୁଃଖରୁ ତତେ କିଏ ମୁକ୍ତି ଦେବ !! ଦେଇ ପାରିବ !!!

ସେମିତି ଆଖିବୁଜି ଆବାସୀ କହିଲା, ମୁଁ ଏବେ ବସ୍‌ରେ ଯିବାବେଳେ ଆସିବା ବେଳେ ଭାବେ, ବାଟରେ ବସ୍ ଖରାପ ହେବ । ମୁଁ ରାସ୍ତାକଡ଼ରେ ଗଛଡେର ଉପରେ ବସିଥିବି । ଯାଉ ଯାଉ ଜିପ୍‌ଟାଏ ଅଟକିଯିବ । ଓହ୍ଲାଇ ଆସିବ ମନୋରମ । ତାକି ନେଇଯବ ନିର୍ଜନ ବଙ୍ଗଳାକୁ, କହିବ କେତେ ପରୀ-କାହାଣୀ ।

ହସିଲା ଆବାସୀ । ଦେଖ୍ ତ ବାଣୀ, ଏ ଭାବନା କେଡ଼େ ପିଲାଳିଆ । ତଥାପି ମୁଁ ଭାବେ । ଭାବନା ଉପରେ କାହାର ବା ହାତ ଅଛି ! ସେ ନୀରବ ହେଲା ।

ଟିକିଏ ପରେ ସିଧା ହୋଇ ବସିଲା । କହିଲା, ଯାହା ଘଟିଯିବ ଘଟିଯିବ, ଏଇ ଘଟିଲା.... ଘଟିଲା - ବୋଲି ମୁଁ ଭାବୁଥିଲି, ତାହା ହିଁ ଆଉ ଘଟିଲାନାହିଁ ।

ସେଥର ଡି.ପି.ଆଇ. ଅଫିସ୍‌ରେ ଜଣେ ଦୂର ସମ୍ପର୍କୀୟ ଭାଇଙ୍କ ସହ ଦେଖାହେଲା । ବରହମ୍ପୁରରେ ତାଙ୍କ ସହିତ ଚିହ୍ନା ହୋଇଥିଲା । ବିନୋଦ ଭାଇ ଓ ତାଙ୍କ ସ୍ତ୍ରୀ ନମିତା ଭାଉଜ, ଦୁହେଁ ସେହି ଅଫିସ୍‌ରେ ଚାକିରି କରନ୍ତି ।

ସେମାନଙ୍କୁ ଦେଖି ଭାରି ଖୁସି ଲାଗିଲା । ଏଣୁ ତେଣୁ କେତେ କଥାବାର୍ତ୍ତା ଭିତରେ ବରହମ୍ପୁର କଥା ସବୁ ପଡ଼ିଲା ଓ ମନୋରମ ଆସିଗଲା କଥାରେ କଥାରେ ।

ବିନୋଦ ଭାଇ ହସି ହସି ଅନୁଚ୍ଚ କଣ୍ଠରେ କହିଲେ, ଜାଣିଛ ଆବାସୀ, ବଡ଼ଲୋକ ହେଲେ ମଣିଷ ଏମିତି ବଦଳି ଯାଆନ୍ତି ।

ମୁନିଟା କେଡ଼େ ଭଲ ଥିଲା । ଏବେ କିନ୍ତୁ ଏମିତି ଗମ୍ଭୀର ହୋଇଯାଇଛି ଯେ, ଦେଖିଲେ ନ ଚିହ୍ନିବା ପରି ଚାଲିଯାଉଛି । ଥରେ ଏକ ନମ୍ବର ମାର୍କେଟ୍‌ରେ ଦେଖାହୋଇଥିଲା । ମୁହଁ ଆଡ଼େଇ ନେଲା । କୋଉଠି ରହୁଛି ବୋଲି ପଚାରୁଥିଲି ନା ?

ବିନୋଦ ଭାଇ ମନୋରମର କ୍ୱାର୍ଟର୍ସ ଠିକଣା କହିଦେଲା । ତା'ପରେ କହିଲା, ସରକାରୀ ପଦ ପଦବୀ ମଣିଷକୁ କ'ଣ ନକରେ !

ମୁଁ ପଚାରିଲି, ତମେ କ'ଣ କେବେ ତାଙ୍କ ବସାକୁ ଯାଇଥିଲ ?

ବିନୋଦ ଭାଇ ଆଖି ବଡ଼ ବଡ଼ କରି କହିଲେ, ବୋପାଲୋ, କ'ଣ ମରିବାକୁ ? ଯିଏ ବାଟରେ ଦେଖି କଥା ନକହି ମୁହଁ ଆଡ଼େଇ ଚାଲି ଯାଉଛି, କେଉଁ ସାହସରେ ତା' ଘରକୁ ଯାଇହେବ କହିଲ !

ମୁଁ କହିଲି, ଦେଖ ବିନୋଦ ଭାଇ, ପ୍ରକୃତରେ କଥାଟା କ'ଣ ହୋଇଥିବ ତା' ତ ମୁଁ ଜାଣେ ନାହିଁ । ତେବେ ମାର୍କେଟ୍‌ରେ ସେ ତମକୁ ଦେଖି ନଥାଇପାରେ । ତମକୁ ହୁଏତ ଲାଗୁଛି, ସେ ଦେଖିଛି ଓ ମୁହଁ ବୁଲେଇ ଚାଲିଗଲା ! ତମ ପ୍ରତି ସେ କ'ଣ ଏମିତି ବ୍ୟବହାର କରିପାରିବ ? କାହିଁକି ବା କରିବ ?

ହସି ଉଠିଲେ ବିନୋଦ ଭାଇ । ସେହି ମନୋରମ, ସେହି ମୁନି ଆଉ ନାହିଁ ଆବାସୀ । ତମେ ତାକୁ ଏବେ କେବେ ଦେଖଛ ? କେବେ ଦେଖିଛ ?

ତା'ପରେ ମୁହଁକୁ ନୁଆଁଇ ଆଣି ଫୁସୁଫୁସୁ କରି କହିଲେ, ତମେ ଜାଣିଛ ଆବାସୀ, ସେ ତା' ସ୍ତ୍ରୀକୁ ମାରି ଦେଇଛି ?

ମୁଁ ଚମକି ଉଠିଲି ବାଣୀ । ମୋ ଦେହରେ ଜଳନ୍ତା - ନିଆଁର ସ୍ରୋତଟାଏ ଖେଳିଗଲା । ମୁଁ ଥରି ଉଠିଲି । ମୋ ମୁହଁରୁ ଯନ୍ତ୍ରଣାର ଶବ୍ଦଟାଏ ବାହାରି ଗଲା ।

ଏଁ... ।

ବିଶି ଆଙ୍ଗୁଠିକୁ ପାଟିରେ ଦେଇ ବିନୋଦ ଭାଇ କହିଲେ, ଚୁପ୍ । ଚୁପ୍, ପାଟି କର ନାହିଁ ।

ତା'ପରେ ଆଶ୍ୱସ୍ତ ହେଲାପରି କହିଲେ, ଏଇଟା ଅବଶ୍ୟ ତିନିଚାରି ମାସ ତଳର କଥା । ତା'ପର ଠାରୁ ସେ ଏଠାରୁ ବଦଳି ହୋଇ ଯିବାକୁ ଚେଷ୍ଟା କରୁଥିଲା । ଏବେ ତା'ର ବଦଳି ହୋଇଯାଇଛି ।

ତା'ପରେ ବିଦ୍ରୁପର ହସ ହସି, ଶାଣିତ କଣ୍ଠରେ କହିଲେ, ଅତି ନିକଟତମମାନଙ୍କ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ ଯେ, ତା' ସ୍ତ୍ରୀକି ସେ ମାରି ଦେଇଛି ବୋଲି । ବାହାରେ ସମସ୍ତେ ଜାଣିଲେ, ତା' ସ୍ତ୍ରୀ ଆତ୍ମହତ୍ୟା କରିଛି ବୋଲି ।

ମୁଁ ଏଥର ଚାପା ଚିତ୍କାର କରି ଉଠିଲି, ଆତ୍ମହତ୍ୟା ? କାହିଁକି ? ବେପରୁଆ ହସ ହସି ବିନୋଦ ଭାଇ କହିଲେ, କେଜାଣି ! କାହିଁକି ! ସେ ସବୁ ଭିତର କଥା । ବାହାରର ଲୋକେ ଜାଣିବେ କେମିତି ! କେତେ ପ୍ରକାର କଥା ତ ଶୁଣାଯାଉଛି ଆବାସୀ । କ'ଣ ମିଳିବ ହୋ ସେଥିରୁ !

ଭ୍ୟାନିଟି ବ୍ୟାଗ୍କୁ କାନ୍ଧରେ ଓହଳାଇ ନମିତା ଭାଉଜ ଆସି ପହଞ୍ଚିଗଲେ । କହିଲେ, ଆବାସୀ, ଚାଲ ଚାଲ, ବସାକୁ ଯିବା, ସେଇଠି କଥାବାର୍ତ୍ତା । ଏ ଫାଲ୍ତୁ କଥାରୁ କ'ଣ ମିଳିବ ହୋ, ଆସ ଯିବା ।

ସମସ୍ତେ ଅଫିସ୍ରୁ ବାହାରି ଚାଲିଲୁ ।

ବିନୋଦ ଭାଇ ପୂର୍ବ କଥାର ଖିଅ ଧରି କହିଲେ, ଆବାସୀ, ବୁଝିଲ ନା, ମନୋରମ ବିଷୟରେ କିଏ କେତେ ପ୍ରକାର କେତେ କଥା କହୁଛନ୍ତି । କିଏ କହୁଛି, ତା' ସ୍ତ୍ରୀର ଚରିତ୍ର ଭଲ ନୁହେଁ, ତା'ର ଅନ୍ୟ ଜଣେ ପୁରୁଷ ସହିତ ସଂପର୍କ ଥିଲା । ସେମାନେ ସତ୍ୟ କରିଥିଲେ । ହେଲେ ଝିଅର ବାପା ମନୋରମ ବଡ଼ ଅଫିସର ଥିବାରୁ ଜୋରଜବରଦସ୍ତ କରି, ମାନେ ଗୋଟାଏ ଅକଳିଆ କେସ୍ ସୃଷ୍ଟି କରି ସେଥିରେ ମନୋରମକୁ ପକେଇଦେଲେ । ଜବରଦସ୍ତ ତା' ସହିତ ଝିଅକୁ ବାହା ଦେଇଦେଲେ ।

କିନ୍ତୁ ପ୍ରେମିକ ପ୍ରବରଟି ପୂର୍ବପରି ଆସିବାକୁ ଲାଗିଲା । ଦୁହିଁଙ୍କର ସମ୍ପର୍କ ପୂର୍ବବତ୍ ରହିଲା । ଦିନେ ସେ ଦୁହିଁଙ୍କୁ ମନୋରମ ଏମିତି ଗୋଟାଏ ଅବସ୍ଥାରେ ଦେଖିଲା, ଯେଉଁଥିପାଇଁ କି ତା' ସ୍ତ୍ରୀକୁ ସେ ମାରିଦେଲା ।

ଆଉ କିଏ କହୁଛି, ତା' ସ୍ତ୍ରୀ ଖୁବ୍ ଭଲ ଝିଅ । ମନୋରମକୁ ପାଇ ସେ ସୁଖୀ ନଥିଲା । ଆହା ବିଚାରୀ ! ସେ ବା ଆଉ କ'ଣ କରିପାରିଥାନ୍ତା । ଶେଷରେ ନିଜ ଜୀବନର ସବୁ ଦୁଃଖକୁ ଶେଷ କରିଦେଇ, ସେ ନିଜେ ନିଜକୁ ଶେଷ କରିଦେଲା ।

ଆବାସୀ କହିଲା, ଏସବୁ କଥା ଶୁଣି ମୋ ଅବସ୍ଥା ତୁ ବୁଝିପାରୁଥିବୁ । ମୋର ଧୈର୍ଯ୍ୟର ବନ୍ଧ ଭୁଶୁଡ଼ି ପଡୁଥିଲା ।

ମୁଁ ପଚାରିଲି, ମନୋରମକୁ ବିବାହ କରି ତା' ସ୍ତ୍ରୀ ସୁଖୀ ନହେବାର କାରଣ କ'ଣ ବିନୋଦ ଭାଇ । ସେ ତ ସବୁ ଦୃଷ୍ଟିରୁ ଉତ୍ତମ ।

ହୋ-ହୋ ହୋଇ ହସି ଉଠିଲେ ବିନୋଦ ଭାଇ । ନମିତା ଭାଉଜ ମଧ ହସିଲେ ।

ଦୁହିଁଙ୍କର ମିଳିତ ହାସ୍ୟରୋଳ କ୍ୟାପିଟାଲ୍ ରାସ୍ତାର ଦୁଇ କଡ଼ର ଗଛର ପତ୍ର ଗୁଚ୍ଛରେ ଧକ୍କା ପାଇ ଯେମିତିକି ଟୁକୁରା ଟୁକୁରା ହୋଇଗଲା ଓ ମୋ' ଉପରେ ଅଜାଡ଼ି ପଡ଼ିଲା ।

ନମିତା ଭାଉଜ ମୋ ହାତକୁ ଧରି ଟାଣିନେଲେ ।

ଚାଲମ, ବସାକୁ ଯିବା । ଯାଙ୍କର ଏଇସବୁ କଥାକୁ ତମେ ଶୁଣୁଛ କାହିଁକି ? ଯିଏ ଯାହା ହେଲା, ଆମର କ'ଣ ଯାଉଛି । ଯାହା ମନ ହେଉଛି, ସିଏ ନାଚୁଛି । ଯାହା ମନ ହେଉଛି ସିଏ କହୁଛି । ଲୋକଙ୍କ ପାଟିରେ କିଏ ବାଡ଼ବତା ଦେବ ?

ଜାଗଁର ନା ଆବାସୀ, ବିଚରା ତ ବାହା ହେବ ନାହିଁ ବୋଲି ଆଜି ପର୍ଯ୍ୟନ୍ତ ବାଉଁଥି ଥିଲା । ମଦୁଆ ଅଫିସରଟା ତାକୁ ଅକଳରେ ପକେଇ ନିଜ ଝିଅକୁ ବାହା ଦେଇଦେଲା । ଏବେ ମ ଏବେ, ଏଇ ଜମାରୁ ବର୍ଷେ ଖଣ୍ଡେ ହେବ କି ନାହିଁ । ଯେତେକ ଅଭିଳା କଥା ତମେ ପରା ଏଇ ଭୁବନେଶ୍ୱରରୁ ଶୁଣିବ ।

ସେ ହସିଲେ । ମତେ ଟାଣି ନେଉ ନେଉ କହିଲେ, କ'ଣ ମିଳିବ ସେଥିରୁ ଆମକୁ ! କେତେ ଦିନ ପରେ ଦେଖା । ଆସ, ଆସ ଆଜି ରହିବ ଆବାସୀ । କାଲି ଭୋର ବସ୍‌ରେ ଯିବ । କ'ଣ କହୁଛ ମ । ମୂକ ହୋଇଗଲ ନା କ'ଣ !

ମୁଁ ସତରେ ମୂକ ହୋଇଯାଇଥିଲି ବାଣୀ ।

ଛେପ ଢୋକି କହିଲି, କହୁନା, ସତରେ କ'ଣ ହେଲା ? ପ୍ରକୃତ ଘଟଣାଟା କ'ଣ ?

ବିନୋଦ ଭାଇ ସୁନ୍ଦର ହସଟିଏ ହସି କହିଲେ, ସତ ମିଛ ଜାଣେ ନାହିଁ ଆବାସୀ । ଅନେକ କହୁଛନ୍ତି, ମନୋରମଟା ଏଫିମିନେଟ୍ ।

ନିଆଁରେ ପଡ଼ି ଲାଲ୍ ହୋଇଯାଇଥିବା ଲୁହାକୁ ଦେଖିଥିବ ବାଣୀ । ଲାଲ୍ ପଡ଼ି ଯାଇଥିବା ଲଙ୍ଗଳ ଲୁହାଟାଏ ମୋ ହୃଦ୍‌ପିଣ୍ଡରେ ଗଳିଗଲା । ଯନ୍ତ୍ରଣାରେ ମୁଁ ସେଇଠି ସ୍ଥାଣୁ ହୋଇଗଲି ।

ନମିତା ଭାଉଜ ମୋ ହାତକୁ ଧରିଥିଲେ ଓ ଟାଣିନେଇଗଲେ । ବିନୋଦ ଭାଇଙ୍କୁ କହିଲେ ତମେ ଜାଣିଛ ସେ କ'ଣ ?

ବିନୋଦ ଭାଇ ହାତ ହଲେଇଦେଇ, ବ୍ୟଙ୍ଗ ସ୍ୱରରେ କହିଲେ, କେଜାଣି ବାବା ! ବଡ଼ ଘର ବଡ଼ ଗୁମର କଥା, ସଙ୍ଗାତ କାନ ଡେରିଥା ।

କୌତୁକରେ ସେ ହସି ଉଠିଲେ ।

ସେ ହସ ନମିତା ଭାଉଜଙ୍କ ମୁହଁକୁ ବି ସଂକ୍ରମିତ ହୋଇଆସିଲା ।

ଛକରେ ଆମେ ପହଞ୍ଚି ଯାଇଥିଲୁ ।

ସେମାନେ ସେଦିନ ତାଙ୍କ ଘରେ ରହିଯିବାକୁ ମତେ ବାଧ କରୁଥିଲେ । ଆଉ କେବେ ଆସିଲେ ରହିବି ନିଶ୍ଚୟ । ଆଜି ରହିହେବ ନାହିଁ । ଫେରିଯିବି । ବହୁତ କାମ ଅଛି କହି, ମୁଁ ଚାଲି ଆସିଲି ବସ୍‌ଷ୍ଟାଣ୍ଡ ଆଡ଼କୁ ।

ଦୁଇଟା ତକିଆକୁ ମୁଣ୍ଡତଳେ ଦେଇ ଆବାସୀ ଚିତ୍ ହୋଇ ଶୋଇଲା । ବାଣୀର ଡାହାଣ ହାତକୁ ଆଣି ଛାତିର ଦୁକ୍‌ଦୁକି ଉପରେ ଥୋଇ କହିଲା,

ବାଣୀରେ, ସେଇ ତତଲା ଲୁହା ଏଇଠି ଗଳିଯାଇଛି । ସେ ସେଇଠି ରହିଯାଇଛିରେ । ବାହାରି ନାହିଁ । ମୁଁ ତାକୁ ବାହାର କରିଦେଇ ପାରୁନାହିଁ । କହ, ମୁଁ କ'ଣ କରିବି ?

ତୁ ଏ ଘା'ଟାକୁ ଦେଖିପାରୁଛୁ ବାଣୀ ? ଦେଖି ପାରୁଛୁ ତା'ର ରକ୍ତସ୍ରାବକୁ ?

ଆବାସୀର ସ୍ୱର ଗଭୀର ବାମ୍ପିଂ ଭିତରେ ଯେମିତି ମିଳେଇଗଲା ।

ବାଣୀ ନିଜର ତଳଓଠଟାକୁ କାମୁଡ଼ି ଧରି ଭାବିଲା, ଆବାସୀ ହୃଦୟରେ ପ୍ରେମଜନିତ ଯେଉଁ କ୍ଷତ ସୃଷ୍ଟି ହୋଇଛି,ତାହା ତ କେବେ ହେଲେ ଶୁଖିବାର ନୁହେଁ । ଚିର ଅଶୁଖା ।

ବାଣୀର ଭୟ ହେଲା । ନିର୍ଜନତାର ପ୍ରତିଟି ମୁହୂର୍ତ୍ତରେ ନିଜ ଭିତରେ ନିଜେ ସଙ୍କୁଚିତ ହୋଇ ଶେଷରେ ଆବାସୀ ନିଜକୁ ଆଉ ଧାରଣ କରି ରଖିପାରିବ ତ ?

ମୋ ମତରେ ତୋର ଥରେ ମନୋରମ ସହିତ ଦେଖାକରିବା ଉଚିତ ଥିଲା, ଆବାସୀ ।

ବାଣୀର ଏ କଥାକୁ ଯେମିତି ଆବାସୀ ଶୁଣି ପାରିଲା ନାହିଁ ।

ଅନେକ ସମୟ ପରେ କେଉଁ ଗଭୀର ତଳୁ ତା' ସ୍ୱର ଭାସି ଆସିଲା ।

ବାଣୀରେ, ସେଦିନ ବିନୋଦ ଭାଇ ଓ ନମିତା ଭାଉଜଙ୍କ ପାଖରୁ ତରତର ହୋଇ ଚାଲି ଆସିଲି ବସ୍ ଧରିବି ବୋଲି । କିନ୍ତୁ ତା' ପରେ ମୁଁ ମନୋରମ କ୍ୱାର୍ଟର୍ସକୁ ଯାଇଥିଲି । କ୍ୱାର୍ଟର୍ସ ଖାଲି । ଲମ୍ବା ଛୁଟି ନେଇ ସେ ହିମାଳୟ ଭ୍ରମଣରେ ବାହାରି ଯାଇଥିଲା ।

ଆବାସୀର ବୁଜା ଆଖିରୁ ଧାରେ ଲୁହ ବୋହି ଆସି, କାନ ପାଖ କେଶଗୁଚ୍ଛରେ ମିଶିଗଲା । ତା'ର ଛାତି ଉଠୁଥିଲା, ପଡୁଥିଲା । ସେଇଥିରୁ ବୁଝି ହେଉଥିଲା ସେ ଜୋର୍ ଜୋର୍ ନିଃଶ୍ୱାସ ନେଉଛି ।

ବାଣୀ ତା' ମୁହଁକୁ ଅପଲକରେ ଚାହିଁଥିଲା ।

